# ବିଚିତ୍ର ଜୀବଜନ୍ତୁ

ବିପିନ ବିହାରୀ ମିଶ୍ର



ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ, କଟକ - ୭୫୩ ୦୦୨.

# ବିଚିତ୍ର ଜୀବଜନ୍ତୁ

ଲେଖକ :
ବିପିନ ବିହାରୀ ମିଶ୍ର

ପ୍ରକାଶକ :
**ଫ୍ରେଣ୍ଡସ୍ ପବ୍ଲିଶର୍ସ**
ବିନୋଦ ବିହାରୀ
କଟକ - ୨

ପ୍ରଥମ ସଂସ୍କରଣ : ୧୯୯୬

ପ୍ରଚ୍ଛଦ :
ରଣଜିତ ପରିଜା

ମୁଦ୍ରଣ:
ୟୁନିଟେକ୍ କମ୍ପ୍ୟୁଟରସ ଆଣ୍ଡ୍ ସର୍ଭିସେସ୍
ଚୌଧୁରୀ ବଜାର, କଟକ - ୧.

ଅଫସେଟ୍ ପ୍ରିଣ୍ଟିଙ୍ଗ୍ :
ଜଗନ୍ନାଥ ପ୍ରୋସେସ୍
ତଗରପଡ଼ା, କଟକ

ମୂଲ୍ୟ : ଟ ୧୨

ଯେଉଁମାନଙ୍କର ଗପ ଶୁଣିବା ଉତ୍କଣ୍ଠା

ମତେ ଲେଖନୀ ଧରିବାର ଉତ୍ସାହ ଦେଲା ସେଇ ...

ପୁପୁ ଓ ଇନିଙ୍କୁ

# ସୂଚିପତ୍ର





# ଉପକାରୀ ପଡ଼ୋଶୀ

ଆଜି ରବିବାର, ପିଲାମାନଙ୍କୁ ତାଙ୍କ ବାପା ଧଉଳିଗିରି ଦେଖିଯିବା ପାଇଁ ନେଲେ । ଗାଡ଼ିରେ ବସୁ ବସୁ ଛଅ ବର୍ଷର ଝିଅ ଇନି ବାପାଙ୍କୁ ତିଆରିଲା, ''ବାପା, ଆମେ ତ ଯିବା, ଆମ ଘରେ ଯଦି ଚୋର ପଶନ୍ତି ?''

ହେଡ୍, ଆମ କଲୋନୀରେ ପରା ଗୁର୍ଖା ଚୌକିଦାର ଅଛି-ଇନିଠୁଁ ଦି ବର୍ଷରେ ବଡ଼ ପୁପୁ ମନେ ପକେଇ ଦେଲା ।

ଆଚ୍ଛା ପିଲେ କହିଲ, ଆମର ସିନା ଚୌକିଦାର ଅଛନ୍ତି, ପକ୍ଷୀମାନଙ୍କ ପିଲାଛୁଆଙ୍କୁ କିଏ ରକ୍ଷା କରେ ? ସେମାନେ ତ ସକାଳ ନହଉଣୁ ଉଡ଼ି ଚାଲିଯିବେ ଖାଇବା ପାଇଁ ଓ ନିଜ ଛୁଆମାନଙ୍କ ପାଇଁ ଖାଇବା ଜିନିଷ ଆଣିବା ପାଇଁ ।



ଦୁଇ ପିଲା ପରସ୍ପର ମୁହଁକୁ ଚାହିଁଲେ ।

ବାପା ବୁଝାଇଲେ –

ଦକ୍ଷିଣ ଆମେରିକାରେ କାସିକ୍ ବୋଲି ଗୋଟିଏ ଚଢ଼େଇ ଅଛି । ଦେଖିବା ପାଇଁ ଶାଗୁଆ, ଲମ୍ବା ପାରାପକ୍ଷୀ । କୁଟା, କାଠିକୁ ନେଇ ସେ ବସା କରେ ।

ଗୋଟେ ଗୋଟେ ବସାର ଲମ୍ବା ଛଅଫୁଟ ହେଇଯାଏ । ବସାର ଦି'ଟା ବାଟ ଥାଏ, ଉପରେ ଏବଂ ତଳେ । ବସାଗୁଡ଼ିକ ଗଛ ଡାଳରେ ଝୁଲୁଥାନ୍ତି । ବର୍ଷା ହେଲେ ସେଥିରେ ପାଣି ପଶି ପାରେନି ଓ ଡାଳରେ ଏଭଳି ମଜଭୁତ ଭାବେ ବନ୍ଧିହୋଇରହିଥାଏ ଯେ ଦି' ଚାରିଟା ପବନ ହେଲେ ମଧ୍ୟ ପଡ଼େ ନାହିଁ ।

ତା ସତ୍ତ୍ୱେ ବସା ତା ପାଇଁ ନିରାପଦ ନୁହେଁ । ବଣଭୁଆ, ସାପ, ଗୋଧି ଓ ଜଙ୍ଗଲି ମୂଷା ତା ଅଣ୍ଡା ବା ଛୁଆକୁ ଖାଇବା ପାଇଁ ସବୁବେଳେ ଚାହିଁବସିଥାନ୍ତି । ଚଢ଼େଇ ବସା ଛାଡ଼ିବା ମାତ୍ରେ ସେମାନେ ଚଢ଼ଉ କରନ୍ତି । କିନ୍ତୁ ତା ହୋଇପାରେ ନାହିଁ, କାରଣ କାସିକ୍ ଚଢ଼େଇ ତା ବସା ବିରୁଡ଼ି ବସା ପାଖରେ ବାନ୍ଧିଥାଏ । ଚଢ଼େଇର ଚଳପ୍ରଚଳ ଦ୍ୱାରା ବସା ଯେତେ ହଲିଲେ କି ଛୁଆମାନେ ଖଣ୍ଡିଉଡ଼ା ଦବା ସମୟରେ ବିରୁଡ଼ିମାନେ କିଛି କରନ୍ତି ନାହିଁ, ଅଥଚ ଯଦି ଆଉ କୌଣସି ଜୀବଜନ୍ତୁ, ପକ୍ଷୀ ଚଢ଼େଇର ବସା ପାଖକୁ ଆସିବା ପାଇଁ ଚେଷ୍ଟା କରନ୍ତି, ବିରୁଡ଼ିଙ୍କ ରାଗ ଦେଖେ କିଏ । ଶହ ଶହ ସଂଖ୍ୟାରେ ବାହାରି ସେ ଚୋରକୁ ବିନ୍ଧି ଦିଅନ୍ତି । ଏତେ ଜୋର୍‌ରେ ମାରନ୍ତି ଯେ ଓହ୍ଲେଇ ପଳେଇବା ପାଇଁ ତର ସହେ ନାହିଁ । ସାପ, ବଣଭୁଆ ଅବା ଗୋଧି ବିରୁଡ଼ି ମାଡ଼ରେ ଅଥୟ ହୋଇ ପଚାଶ ଫୁଟ ଉଚ୍ଚରୁ ଚିତ୍‌ପଟାଙ୍ଗ୍ ହୋଇ ପଡ଼ନ୍ତି ।

ବୁଝିଲୁ ବୋକୀ, ଆମ କଲୋନୀରେ ଯୋଉ ଗୁର୍ଖା ଦରୁଆନ୍ ଅଛନ୍ତି, ସେ ସବୁ ଚୋରକୁ ମାରି ଘଉଡ଼େଇ ଦବ । ତୋର ଡରିବାର କିଛି କାରଣ ନାହିଁ ପୁପୁ ବୁଝେଇଲା ଢଙ୍ଗରେ କହିଲା ଓ ଇନି ଜବାବ ଦେଲା ''ହଁ, ତୁ ସବୁ ଜାଣିଚୁ ! ପକ୍ଷୀକୁ ସିନା ବିରୁଡ଼ି ରକ୍ଷାକରିବ, ପଶୁମାନଙ୍କୁ କିଏ ରକ୍ଷା କରେ କହିଲୁ ?''

ପୁପୁ ସାଙ୍ଗେ ସାଙ୍ଗେ ଉତ୍ତର ଦେଇ ପାରିଲା ନାହିଁ । ସେମାନଙ୍କର ମା ବୁଝାଇଲେ –

ଅନେକ କ୍ଷେତ୍ରରେ ପଶୁପକ୍ଷୀମାନେ ପରସ୍ପରକୁ ସାହାଯ୍ୟ କରନ୍ତି, ବିପଦ ସମୟରେ ଇସାରା ଦେଇ ଦିଅନ୍ତି । ବାଘ ବୁଦାମୂଳେ ଲୁଚିଥିଲେ ମାଙ୍କଡ଼

ଜାଣିପାରେ ଓ ବୋବେଇ ଦିଏ, ମାଙ୍କଡ଼ର ବୋବାଳି ଶୁଣି ହରିଣମାନେ ପଳାନ୍ତି ।

କଜଳପାତି ଚଢ଼େଇ ରଙ୍ଗରେ କଳା, ଲମ୍ବା ପ୍ରାୟ ଫୁଟେ ହବ । ସେ ଯେଉଁଠି ବସାବାନ୍ଧେ ବିଭିନ୍ନ ସାନ ଚଢ଼େଇମାନେ ତା'ପାଖରେ ରହନ୍ତି । କଜଳପାତି ସେମାନଙ୍କର ''ଦାଦା'' । ଯଦି ଅନ୍ୟ କେହି ଚଢ଼େଇ ବିଲେଇ କିମ୍ବା ସାପ ସାନଚଢ଼େଇକୁ ଖାଇବା ପାଇଁ ଆସନ୍ତି କଜଳପାତି ଅଣ୍ଟାଭିଡ଼ି ବାହାରିପଡ଼େ । ବଣଭୁଆ, ଗୋଧି କିମ୍ବା ସାପକୁ ଖୁମ୍ପି ଖୁମ୍ପି ବିଦା କରିଦିଏ, ଏପରିକି ତାଠୁଁ ବଡ଼ ଛଞ୍ଚାଣକୁ ମଧ୍ୟ ଘଉଡ଼େଇ ଦିଏ । କଜଳପାତି ଯେ କେବଳ ଲଢ଼େଇ କରେ ତା' ନୁହେଁ, ଲଢ଼େଇ ସାଙ୍ଗେ ସାଙ୍ଗେ ଇମିତି ଚିତ୍କାର କରେ ଓ ପକ୍ଷୀକୁ ପକ୍ଷୀ ବାଡ଼େଇ ଶବ୍ଦକରେ ଯେ ତାଠୁଁ ବେଶି ବଳବାନ୍ ଶତ୍ରୁ ମଧ୍ୟ ଡରି ପଳାଏ । ଗଛ ଅଗରେ ବସି ସେ ଚଢ଼େଇଟି ସବୁବେଳେ ଚାରିଆଡ଼େ ନଜର ରଖିଥାଏ, ବିପଦ ଆସିଲା ମାତ୍ରେ ଡରି ନଯାଇ ଲଢ଼େଇକୁ ବାହାରି ପଡ଼େ ।

କଜଳପାତିର ଆଉ ଜଣେ ବନ୍ଧୁ ହଉଚି ହରିଣ । ବାଘ, ଚିତା, ଗଧିଆ ଦେଖିଲାମାତ୍ରେ ଚଢ଼େଇ ବୋବାଏ, ଯେଉଁଆଡୁ ବିପଦ ଆସେ ସେଇଆଡ଼କୁ



ମୁହଁକରି ବୋବାଏ ଓ ହରିଣ ଅନ୍ୟ ଦିଗରେ ପଳାଏ । ଏତେ ଜୀବଜନ୍ତୁ ପଶୁପକ୍ଷୀଙ୍କ ଦାୟିତ୍ୱରେ ରହିବା ଦ୍ୱାରା କଜଳପାତି ଦିନସାରା ହଜାରେ ଇସାରା ଦେଉଥାଏ, କିନ୍ତୁ ସବୁବେଳେ କ'ଣ ହରିଣ ପଳାଏ ? – ନା । କାରଣ ହିଂସ୍ରଜନ୍ତୁଙ୍କୁ ଦେଖିଲେ ସେ ଏକ ସ୍ୱତନ୍ତ୍ର ପ୍ରକାର ବୋବାଳି ପକାଏ ଯାହା ହରିଣ ବୁଝିପାରି ପଳାଏ ।

ହରିଣଠାରୁ ଚଢ଼େଇ ମଧ କିଛି ଉପକାର ପାଏ । ସେ ଚାଲୁଥିଲାବେଳେ କିମ୍ବା ଦୌଡୁଥିବା ସମୟରେ ଘାସ ତଳେ ଲୁଚିଥିବା ବିଭିନ୍ନ ପୋକ ଉଡ଼ନ୍ତି ଓ କଜଳପାତି ହରିଣ ପଠିରେ ବସି ତାଙ୍କୁ ଦେଖେ ଓ ଖାଇଦିଏ ।

କେତେ ବଢ଼ିଆ ବ୍ୟବସ୍ଥା ଦେଖିଲ ତ !

ଭାଇ ଭଉଣୀ ମୁଣ୍ଡ ହଲେଇଲେ ଓ ପଚାରିଲେ ପୋକମାନେ ପରସ୍ପରକୁ ସାହାଯ୍ୟ କରନ୍ତି କି ନାହିଁ ।



# ପିମ୍ପୁଡ଼ିଙ୍କ ଗାଈ



ସନ୍ଧ୍ୟାବେଳେ ପୁପୁ-ଇନିଙ୍କ ଘର ସାମ୍ନାରେ ଗାଡ଼ିଟିଏ ଠିଆହେଲା ଓ ବାପା ବାରଣ୍ଡାରୁ ପାଟି କଲେ, ଆରେ ରମେଶ ଯେ, ଆ- ଆ । ପିଲେ ରମେଶ ମଉସାଙ୍କୁ ନମସ୍କାର କର । ରମେଶବାବୁ ସେଦିନ ରାତିରେ ଘରେ ରହିଲେ ।

ରାତିରେ ଶୋଇବା ସମୟରେ ଇନି ପଚାରିଲା ରମେଶ ମଉସା ଆମ ଘରେ ରହିବେ ?

ହଁ ।

ସବୁଦିନେ ?

ତୁ କିଛି ଜାଣିନୁ ପୁପୁ ବୁଝେଇଲା, ସେ ପରା ଗେଷ୍ଟ, କାଲି ଚାଲିଯିବେ ।

ଗେଷ୍ଟମାନେ କ'ଣ ଆସି ରହନ୍ତି ?

ହଁ ପରା ।

ଆଚ୍ଛା ବାପା କହିଲ, ଆମର ସିନା ଗେଷ୍ଟ ରୁହନ୍ତି, ପଶୁପକ୍ଷୀମାନଙ୍କର ଗେଷ୍ଟ ରୁହନ୍ତି ?

ଆଚ୍ଛା ପ୍ରଶ୍ନଟେ ପଚାରିଲୁ ଝିଅ ।

ରହ ରହ ମୁଁ ଟିକେ ଭାବେ । ଟିକିଏ ଭାବି କହିଲେ, ହଁ ପଶୁପକ୍ଷୀଙ୍କର ମଧ୍ୟ ଗେଷ୍ଟ ରୁହନ୍ତି । ତମେ ଦେଖିଥିବ ବହୁତ, ପ୍ରକାର ପ୍ରଜାପତି ଅଛନ୍ତି, ତାଙ୍କ ମଧ୍ୟରେ ନେଳିଆ ପ୍ରଜାପତି ଥାଆନ୍ତି । ସାଁବାଳୁଆରୁ ପ୍ରଜାପତି ହୁଅନ୍ତି । ସାଁବାଳୁଆଗୁଡ଼ିକ ଗଛର ପତ୍ର ଖାଇ ବଞ୍ଚନ୍ତି ଓ ଭୂଇଁରେ ଯାଡ଼େ ସିଆଡ଼େ ବୁଲନ୍ତି । ନେଳିଆ ସାଁବାଳୁଆଙ୍କୁ ଦେଖିଲା ମାତ୍ରେ ବଡ଼ ନାଲି ପିମ୍ପୁଡ଼ି ଦେହମୁଣ୍ଡ ଆଉଁସି ପକାନ୍ତି । ସାଁବାଳୁଆ ଦେହରୁ ଟୋପାଟୋପା ମିଠାରସ ଝରେ ଓ ପିମ୍ପୁଡ଼ିମାନେ ତାକୁ ପିଇଯାଆନ୍ତି । ତାପରେ ସାଁବାଳୁଆକୁ ଆସ୍ତେ ଆସ୍ତେ ଟାଣି ଟାଣି ପିମ୍ପୁଡ଼ିମାନେ ଗାତକୁ ନେଇ ଯାଆନ୍ତି ଓ ବାରମ୍ବାର ତାକୁ ଆଉଁସି ଆଉଁସି ଦେହରୁ ମିଠାରସ ବାହାର କରି ଦିଅନ୍ତି ଓ ସାଁବାଳୁଆକୁ ବଞ୍ଚିବା ପାଇଁ ପିମ୍ପୁଡ଼ିମାନେ ନିଜର ଅଣ୍ଡା ଦିଅନ୍ତି ଖାଇବା ପାଇଁ । ଆସ୍ତେ ଆସ୍ତେ ସାଁବାଳୁଆ ବଡ଼ହୁଏ । ଏଭଳି ଅନେକ ଗୁଡ଼ିଏ ସାଁବାଳୁଆଙ୍କଠୁ ମିଠା ପିଇ ପିଇ ପିମ୍ପୁଡ଼ିମାନେ ବେଶ୍ ଆରାମରେ ଥାଆନ୍ତି ଓ ସାଁବାଳୁଆ ବଡ଼ ହେଇ ପ୍ରଜାପତି ହବା ପରେ ଗାତ ମୁହଁରୁ ବାହାରି ଉଡ଼ିଯାଏ । ମଜାକଥା ଏଇ ଯେ ସାଁବାଳୁଆ ନିଜେ ଖୋଜୁଥାଏ ପିମ୍ପୁଡ଼ିଙ୍କୁ । ପତ୍ର ଖାଇ ଖାଇ ତା ପାଟି ଅରୁଚି ଲାଗିଯାଏ ଓ ପିମ୍ପୁଡ଼ିମାନେ ତାକୁ ଟାଣିଲା ମାତ୍ରେ ସେ ଆରାମରେ ତାଙ୍କ ସାଙ୍ଗେ ଘୋଷାଡ଼ି ଘୋଷାଡ଼ି ହେଇ ଯାଏ । ପିମ୍ପୁଡ଼ିଙ୍କ ଅଣ୍ଡା ଖାଇ ସେ ବେଶ୍ ତାଗଡ଼ା ହେଇ ବାହାରେ ଓ ପିମ୍ପୁଡ଼ିଗୁଡ଼ିକ ତା ମିଠାରସ ପିଇ ଇମିତି ମଜି ଯାଆନ୍ତି ଯେ ନିଜ ଛୁଆଙ୍କୁ ଖାଇବା ଦବାକୁ ଭୁଲିଯାଆନ୍ତି ।

ଥରେ ବାପା ପୁପୁ-ଇନିଙ୍କ ପାଇଁ ବଡ଼ ଯତ୍ନରେ ବୋନ୍‌ସାଇ ଗଛଟିଏ ଆଣିଥିଲେ । ବାପା ଓ ମା ହଠାତ୍ ଦିନେ ଦେଖିଲା ବେଳକୁ ବୋନ୍‌ସାଇର ପତ୍ର ପୋକ ଖାଇ ଯାଉଛନ୍ତି ଓ ଗଛରେ ବହୁତ ପିମ୍ପୁଡ଼ି । ପିମ୍ପୁଡ଼ି ଦେଖିଲା

ମାଡ୍ରେ ବାପା କହିଲେ ହେ ଭଗବାନ ଗଛରେ ପିମ୍ପୁଡ଼ି ଲାଗିଲେଣି, ସାଙ୍ଗେ ସାଙ୍ଗେ ଗାମାକ୍‌ସିନ୍ ପକେଇବା ନ ହେଲେ ପୋକ ଖାଇଯିବ ।

ବାପା ବାପା, ପିମ୍ପୁଡ଼ି ଆସିଲେ କ'ଣ ପୋକ ଆସନ୍ତି ? ପଚାରିଲେ– ପୁପୁ ଓ ଇନି ।

ହଁ, ପିମ୍ପୁଡ଼ିମାନଙ୍କ ମିଠା ଖାଇବା ପ୍ରକୃତି, ଆଉ ଗୋଟେ ପ୍ରକାର ପୋକ ସାଙ୍ଗେ ବନ୍ଧୁତା କରାଏ । ଆଫିଡ଼ିସ୍ ବା ସବୁଜ ପୋକ ଗଛପତ୍ର ବହୁତ ନଷ୍ଟ କରେ । ଉକୁଣି ଆକାରର ପୋକଗୁଡ଼ିକ ପତ୍ର ଡାଳ ଖାଇଯାଆନ୍ତି । ଅଥଚ ପିମ୍ପୁଡ଼ି ସାଙ୍ଗେ ୟାଙ୍କର ବନ୍ଧୁତା ବେଶ୍ ଭଲ । ଏଇ ପୋକମାନେ ଯେତିକି



ଦରକାର କରେ ତାଠାରୁ ବେଶି ଖାଆନ୍ତି ଏବଂ ତାଙ୍କ ମୁଣ୍ଡ ଦି' ପାଖରୁ ଖାଇବା ପଦାର୍ଥର ମିଠାରସ ବୋହି ବାହାରି ଆସେ । ବାସ୍ ପିମ୍ପୁଡ଼ିଙ୍କର ସେତିକି ଦରକାର, ସେମାନେ ପୋକକୁ ମାରିବା ପରିବର୍ତ୍ତେ ବେଶ୍ ଆଦର କରନ୍ତି । ସେମାନଙ୍କ ବସାକୁ ଯାଇ ତାଙ୍କ ଦେହ ମୁଣ୍ଡରୁ ମିଠା ଚାଟନ୍ତି ଓ ବେଳେବେଳେ

ସେମାନଙ୍କୁ ଚେକି ପତ୍ରଥିବା ଗଛ ପାଖରେ ପହଞ୍ଚିଥାନ୍ତି । ଯଦି ନ ମିଳିଲା ତେବେ ଭୂଇଁ ତଳକୁ ନେଇ ଚେର ଖୁଆନ୍ତି । ଆମେ ଯେମିତି ଗାଈକୁ ଖୁଆଇ କ୍ଷୀର ପାଉ ପିମ୍ପୁଡ଼ିମାନେ ପୋକକୁ ଖୁଆଇ ମିଠା ଖାଆନ୍ତି ।

ଅନେକ ସମୟରେ ପିମ୍ପୁଡ଼ିମାନେ ବହୁତଗୁଡ଼ିଏ ଆଫିଡ଼ିସ୍‌କୁ ଅଡ଼େଇ ତାଙ୍କୁ ହୁଙ୍କା ଭିତରେ ଲୁଚେଇ ରଖନ୍ତି । ହୁଙ୍କା ଭିତରକୁ ପଶିବା ପାଇଁ ଏତେ ବୁଲାଣି ବାଟ ହୋଇଥାଏ ଯେ ଆଉ କେହି ପୋକ ତାଙ୍କ ପାଖରେ ପଶି ପାରିବେ ନାହିଁ ଓ ସେମାନେ ବାହାରି ପାରିବେ ନାହିଁ । ପୁଣି ଆଫିଡ଼ିସ୍‌ମାନେ ଅଣ୍ଡା ଦେଲେ ଅଣ୍ଡାକୁ ନେଇ ନିଜ ବସାରେ ଲୁଚେଇ ରଖନ୍ତି ଯାହାଦ୍ୱାରା ଅଣ୍ଡାରୁ ଛୁଆ ହେଲେ ତାଙ୍କଠୁଁ ମିଠା ଖାଇହବ । ଆମେ ଯିମିତି ଗାଈ ଛୁଆ ଦେଲେ ତାକୁ ଯତ୍ନରେ ପାଳୁ ପିମ୍ପୁଡ଼ିମାନେ ଠିକ୍ ସେମିତି କରନ୍ତି ।



# ଯୁଦ୍ଧକ୍ଷେତ୍ରରେ କୁକୁର

ସକାଳୁ ସକାଳୁ ଇନିକୁ ପୁପୁ ଉଠେଇ ଦେଲା—''ଉଠ୍ ଜଲ୍‌ଦି, ପୁଲିସ ଆସିଛନ୍ତି ସାଙ୍ଗରେ କୁକୁର ନେଇ, ତଳ ଫ୍ଲାଟ୍‌ରେ ଚୋରି ହେଇଚି ।''

ଇନି ଚଟ୍‌ପଟ୍ ଉଠି ଦାନ୍ତ ଘଷି ପକେଇଲା ଓ ବାଲକୋନିରେ ଠିଆହେଇ ଦେଖିଲା । ତଳେ ପୁଲିସ ଜିପ୍ ଥୁଆ ହୋଇଥାଏ ଓ ଜଣେ ପୁଲିସ ଧରିଥାନ୍ତି ଜିଭ ଲହଲହ କରି ବସିଥିବା ବିରାଟ ଆଲ୍‌ସେସିଆନ୍ କୁକୁରର ଚେନ୍‌କୁ । ବହୁତ ଲୋକ ଘେରି ଠିଆ ହେଇଥାନ୍ତି, ହୋ-ହାଲା କରୁଥାନ୍ତି କିନ୍ତୁ ସେ କୁକୁର ଚୁପ୍‌ଚାପ୍ ବସିଥାଏ । ପାଟି ଶୁଣି ବାପା ଆସିଲେ ଓ ତଳକୁ ଗଲେ ବୁଝିବା ପାଇଁ ।

ଟିକିଏ ସମୟ ପରେ ପୁଲିସବାଲା ରାସ୍ତାରେ ପଡ଼ିଥିବା ଗୋଟିଏ ରୁମାଲକୁ କୁକୁରକୁ ଶୁଙ୍ଘେଇଲେ ଓ ସାଙ୍ଗେ ସାଙ୍ଗେ କୁକୁର ଧାଇଁଲା ରାସ୍ତା ସେପାଖ ପଡ଼ିଆ ଆଡ଼କୁ । ତା ପଛେ ପଛେ ଗଲେ ପୁଲିସବାଲା ଓ ବହୁତ ଲୋକ ।

''ବାପା, କୁକୁର କ'ଣ ଚୋର ଧରିବ ? ସେ କେମିତି ଚୋରକୁ ଚିହ୍ନିବ ?''

''ହଁ, କୁକୁର ବାସନା ଶୁଙ୍ଘି ଚୋରକୁ ଧରିପାରିବ । ସେ ରୁମାଲଟି ବୋଧହୁଏ କେଉଁ ଚୋରର । ବାସ୍ତରି ଘଣ୍ଟା ପର୍ଯ୍ୟନ୍ତ ବାସନା ରହିବ ଓ ଚୋର ଯୋଉ ରାସ୍ତାରେ ଗଲା, ତା ବାସନା ପିଛା କରି କରି କୁକୁର ପହଞ୍ଚିବ ।''

ଆଶ୍ଚର୍ଯ୍ୟହୋଇ ପୁପୁ ଇନି ଅନେଇ ରହିଲେ—''ଚୋରକୁ ଧରିଲେ କୁକୁର କାମୁଡ଼ିବ ?''

— ନା, ଏ ପରା ଟ୍ରେନିଂ ପାଇଥିବା କୁକୁର, କିନ୍ତୁ ଚୋର ଯଦି ତାକୁ ଆକ୍ରମଣ କରିବ ବା ପଳେଇବା ପାଇଁ ଚେଷ୍ଟା କରିବ, ତେବେ କାମୁଡ଼ିଦବ ।

— କୁକୁରର ଏତେ ବଳ ?

– ହଁ ରେ ବାପା, ବହୁତ କୁକୁର ଅଛନ୍ତି, ଯେଉଁମାନେ ବଳୁଆ ଓ ସାହସୀ । ପୂର୍ବ କାଳରେ ରୋମ୍‌ରେ ସୈନ୍ୟମାନେ ସାଙ୍ଗରେ ମାଷ୍ଟିଭ୍ ନାମକ



କୁକୁର ନେଉଥିଲେ ଯୁଦ୍ଧ କରିବା ପାଇଁ । ଏ କୁକୁର ଭାରି ଭୟଙ୍କର, ସାହସୀ ଓ ବଳୁଆ । ସେମାନେ ତିରିଶ ଇଞ୍ଚ୍ ଉଚ୍ଚା, ଗୋଡ଼ ସବୁ ମଜଭୁତ । ଦାନ୍ତ ବଡ଼ ବଡ଼ ଓ ଭାଜି ଟାଣ । ତାଙ୍କ ଦେହରେ ସାଞ୍ଜୁ ବାନ୍ଧି ଦିଆଯାଏ ଓ ପିଠିରେ ଗୋଟେ ଲୁହାପାତ୍ର, ଯାହାର ଗୋଟିଏ କଡ଼ ଲମ୍ବା ଓ ଦାନ୍ତୁଆ । ଲୁହାପାତ୍ରରେ ଜଳୁଥିବା ସାଲସା ରଖି ଦିଆ ହୋଇଥାଏ । ଶତ୍ରୁପକ୍ଷର ଘୋଡ଼ାକୁ ନ ଡରି ଏ କୁକୁରମାନେ ଭୟଙ୍କର ରଡ଼ି ପକେଇ ଆକ୍ରମଣ କରନ୍ତି । ଏକେତ ପିଠିରେ ଖଣ୍ଡା ଲାଗିଛି, ପୁଣି ନିଆଁ ଜଳୁଚି । ଭୟରେ ଘୋଡ଼ାମାନେ ତାଙ୍କ ସୈନ୍ୟଙ୍କୁ ନମାନି ପଛଘୁଞ୍ଚା ଦଉଥିଲେ । ଏ ମାଷ୍ଟିଭ୍‌ମାନେ ଏତେ ସାହସୀ ଯେ ସେମାନେ ଗଧିଆ ଓ ବାଘ ସୁଦ୍ଧା ଶିକାର କରିପକାନ୍ତି ।



ରଟ୍ ଉଇଲର୍ ବୋଲି ଆଉ ଏକ ଜାତିଆ କୁକୁର ଅଛନ୍ତି ସେମାନଙ୍କୁ ମଧ୍ୟ ରୋମ୍‌ର ସୈନ୍ୟମାନେ ଦୁଇ ହଜାର ବର୍ଷ ତଳେ ଯୁଦ୍ଧ ସମୟରେ ବ୍ୟବହାର କରୁଥିଲେ । ଏ କୁକୁରଙ୍କର ଜନ୍ମସ୍ଥାନ ଜର୍ମାନୀରେ । ଜର୍ମାନୀ ଜିଣିବା ସମୟରେ ରୋମାନ୍‌ମାନେ ରଟ୍‌ଉଇଲର୍ କୁକୁରଛୁଆ ଆଣି ସେମାନଙ୍କୁ ବଢ଼େଇଲେ । ସେତେବେଳେ ସେମାନେ ସୈନ୍ୟବାହିନୀ ସାଙ୍ଗେ ଯାଉଥିବା ଗାଈ ଓ ମେଣ୍ଢାଙ୍କୁ ଜଗୁଥିଲେ । ଏମାନଙ୍କର ଉଚ୍ଚତା ଦୁଇ ଫୁଟ, ମାତ୍ର ସାହସ ଓ ବଳରେ କେହି ତାଙ୍କୁ ପାରିବେନି । ପୁଣି ଟ୍ରେନିଂ ପାଇଲେ ସେମାନେ ଅନ୍ଧ ଲୋକଙ୍କୁ ରାସ୍ତାରେ ବାଟ ଦେଖେଇ ନିଅନ୍ତି । ବାସନା ଶୁଙ୍ଘେଇଲେ ଖୋଜି ଖୋଜି ଚୋରକୁ ଧରନ୍ତି । ଗଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ରଟ୍‌ଉଇଲର୍ କୁକୁର ଯୁଦ୍ଧରେ ଭାଗ ନେଇଥିଲେ । ମେସିନ୍‌ଗନ୍ ଓ ତୋପଗୁଡ଼ିକୁ ଗୋଟେ ଜାଗାରୁ ଆଉ ଗୋଟେ ଜାଗାକୁ ନେବା ପାଇଁ ଏମାନଙ୍କର ଦରକାର ପଡୁଥିଲା । ଗୋଳା ବାରୁଦ,

ନିଆଁ ଓ ଶବ୍ଦକୁ ଭୟ ନକରି ଏଇ କୁକୁରମାନେ ମେସିନ୍ ଗନ୍ ଓ ତୋପ ନେଇ ପହଞ୍ଚାଉଥିଲେ । ଦିନରାତି ପରିଶ୍ରମ କରି ଅଳ୍ପ ଗଣ୍ଡେ ଖାଇ ସନ୍ତୁଷ୍ଟ ରହୁଥଲେ ।

ଏମାନଙ୍କୁ ଘରେ ରଖିଲେ ଖୁବ୍ ଭଲ ପୋଷା ମାନନ୍ତି, ବାହାର ଲୋକଙ୍କୁ ଗୋଡ଼େ ଗୋଡ଼େ ଜଗିଥାନ୍ତି । ଏପରିକି ଘରକୁ କୌଣସି ଅତିଥି ଆସି ମାଲିକ ନଥିବା ସମୟରେ କୌଣସି ଜିନିଷରେ ହାତ ମାରିଲେ ଘାଉଁ ଘାଉଁ କରି ସାବଧାନ କରି ଦିଅନ୍ତି ।

କୁକୁରମାନେ ଆଉ କ'ଣ କରନ୍ତି ?

ବିପଦରୁ ରକ୍ଷା କରିବା, ଶିକାରରେ ସାହାଯ୍ୟ କରିବା, ଘରେ ଗୃହପାଳିତ ପଶୁଙ୍କୁ ଜଗିବା, ଜିନିଷପତ୍ର ନେଇ ପହଞ୍ଚେଇବା ଏପରିକି ଚିଠିପତ୍ର ବାଣ୍ଟିବା କାମ ବି ଏମାନେ କରନ୍ତି ।

ସେ ବିଷୟରେ କୁହ ... ।



# ବରଫ ରାଜ୍ୟର ବନ୍ଧୁ

କୁକୁରମାନଙ୍କ ବିଷୟରେ ଆଉ କିଛି କହିବା ପାଇଁ ଅନୁରୋଧକୁ ରକ୍ଷା କରି ବାପା କହିଲେ–

ମଣିଷର ସବୁଠାରୁ ଉପକାରୀ ପ୍ରାଣୀ ହେଉଚି କୁକୁର । କୁକୁର କେବେ ନିଜ ମାଲିକକୁ ଛାଡ଼ି ଯାଏ ନାହିଁ, ସାହାଯ୍ୟ କରିବା ତାର ପ୍ରବୃତ୍ତି । ବଦଳରେ ଚାହେଁ ଗଣ୍ଡେ ଖାଇବା ଓ ଟିକିଏ ଆଦର । କୁକୁରକୁ ଆଉଁସି ଦେଲେ ସେ କେଡ଼େ ଖୁସି ନହୁଏ !

ଘର ଜଗିବା, ମାଲିକ ଓ ତା'ର ପରିବାରକୁ ରକ୍ଷା କରିବା, ପୁଲିସ ଓ ସୈନ୍ୟ ବିଭାଗକୁ ସାହାଯ୍ୟ କରିବା, ଜିନିଷପତ୍ର ବୋହିବା, ମାଲିକ ପାଇଁ ଶିକାର କରିବା, ହଜି ଯାଇଥିବା ଜିନିଷ ଆଣିବା, ଚୋରା କାରବାର ଧରିବା ଇତ୍ୟାଦି ଇତ୍ୟାଦି ଅନେକ କାର୍ଯ୍ୟ କୁକୁର କରେ ।

ପିଲାଟିଏ ଗଭୀର ପାଣିରେ ପଡ଼ିଗଲା, ପାଣି ବରଫ ଭଳିଆ ଥଣ୍ଡା । ପିଲାଟି ବୁଡ଼ିଯିବ କିମ୍ବା ବୁଡ଼ିଯିବା ପୂର୍ବରୁ ଥଣ୍ଡାରେ ମରିଯିବ । ରାସ୍ତାରେ ଯାଉଥିଲା କଳା ମସ୍‌ମସ୍ ମଜଭୁତ୍ କୁକୁରଟିଏ, ପିଲାର ପାଟି ଶୁଣି ପାଣିକୁ ଡେଇଁ ପଡ଼ିଲା ଓ ତାକୁ ଟାଣି ଟାଣି କୂଳକୁ ନେଇ ଆସିଲା । ମରଣକୁ ଭୟ ନ କରି ପାଣିରେ ପଶି ମଣିଷକୁ ରକ୍ଷା କରିବା ହଉଚି ନିଉ ଫାଉଣ୍ଡଲ୍ୟାଣ୍ଡ ଦେଶର କୁକୁରର ପ୍ରକୃତି । ଏଡ଼େ ସାହସୀ ଯେ ସମୁଦ୍ର ପାଣିକୁ ମଧ୍ୟ ଡେଇଁପଡ଼ି ଅନ୍ୟକୁ ରକ୍ଷା କରିବା ପାଇଁ ଚେଷ୍ଟା କରେ । ନିଉ ଫାଉଣ୍ଡଲ୍ୟାଣ୍ଡର କୁକୁର ବହୁତ ଥଣ୍ଡା ସହିପାରେ, ପାଣି ଭିତରେ ପଶିଯାଇପାରେ ଓ ଅକ୍ଳାନ୍ତରେ ବହୁତ ଦୂରତା

ଅତିକ୍ରମ କରିପାରେ । ଶୀତ ଦିନରେ ବରଫ ପଡ଼ି ରାସ୍ତାଘାଟ ନିଶ୍ଚିହ୍ନ ହୋଇଗଲେ ଏଇ କୁକୁରମାନେ ପୋଷ୍ଟମ୍ୟାନ୍‌ର କାମ କରନ୍ତି । ଚିଠି ବାକ୍ସ ତାଙ୍କ ଦେହରେ ବାନ୍ଧିଦିଆଯାଏ ଓ ସେମାନେ ନିର୍ଦ୍ଦିଷ୍ଟ ସ୍ଥାନରେ ଚିଠି ବାକ୍ସ ପହଞ୍ଚାଇ ଫେରି ଆସନ୍ତି । ସେଣ୍ଟ ବର୍ଣ୍ଣାଡ଼ କୁକୁର ପରି ଏ କୁକୁର ଦେଖିବା ପାଇଁ ସୁନ୍ଦର ଓ ଭାରି ବୁଦ୍ଧିମାନ୍ । ସମସ୍ତଙ୍କୁ ଆଦର କରେ, ଆଦର ପାଇଲେ ବହୁତ ଖୁସି ହୁଏ । କିନ୍ତୁ ତା କାମରେ କେହି ବାଧା ଦେଲେ ଆକ୍ରମଣ କରେ ।



ସେହିଭଳିଆ ଗୋଟିଏ କୁକୁର ହେଉଛି ହସ୍କି ବା ଏସ୍କିମୋ କୁକୁର । ଏ କୁକୁର ବିନା ଏସ୍କିମୋ ଜାତି ରହିନଥାନ୍ତେ । ତମେମାନେ ଜାଣିଚ ଏସ୍କିମୋମାନେ ସ୍ଲେଜ୍ ଗାଡ଼ିରେ ଯିବାଆସିବା କରନ୍ତି, ଜିନିଷପତ୍ର ନବା ଆଣିବା କରନ୍ତି, ସେ ଗାଡ଼ିକୁ ଟାଣନ୍ତି ଏଇ କୁକୁରମାନେ । ଏମାନେ ଯେତିକି ମଜ୍‌ଭୁତ୍ ସେତିକି କଷ୍ଟସହିଷ୍ଣୁ, ସାହସୀ ଓ ଅଳ୍ପଭୋଜୀ । ଦୁଇ ଫୁଟରୁ ସାମାନ୍ୟ ଉଚ୍ଚା ଏଇ କୁକୁରର କାମ କରିବାର ଜିଦ୍ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ବରଫ ଝଡ଼

ଆସିବାର ସୂଚନା ପାଇଲେ ମାଲିକକୁ ନିଜ ସ୍ଥାନରେ ପହଞ୍ଚେଇବା କାମ ଅଧିକ ବେଗରେ କରନ୍ତି । ଧାଇଁ ଚାଲନ୍ତି ଦିଗୁଣ ବେଗରେ । ନିଜ ସ୍ଥାନରେ ପହଞ୍ଚି ମାଲିକ ଖୁସିରେ ସେମାନଙ୍କୁ ଖୋଲିଦିଏ, ଖାଇବା ପାଇଁ ତ କିଛି ନଥାଏ, ଶୁଖିଲା ମାଂସ ପୁଳେ କିମ୍ବା ମାଛ ଖଣ୍ଡେ । ସେତିକିରେ ହସ୍କି ସନ୍ତୁଷ୍ଟ । ଖାଇ ଦେଇ ଜାକିଜୁକି ହୋଇ ବରଫ ଉପରେ ଶୋଇପଡ଼େ । ଥଣ୍ଡା ସହିବାର ଶକ୍ତି ତା'ର ବହୁତ, ସକାଳୁ ଉଠିଲା ବେଳକୁ ତା ଦେହରେ ବରଫ ଜମି ଯାଇଥାଏ, ଝାଡ଼ିଝୁଡ଼ି ହୋଇ ଉଠି ପୁଣି କାମ ପାଇଁ ତୟାର ହୋଇଯାଏ । ବିଚରା ଏସ୍କିମୋ ରାତିସାରା ବରଫ ଘର ଭିତରେ ଘୋଡ଼େଇ ହୋଇ ଶୋଇଥାଏ, ବେଳେ ବେଳେ ପ୍ରକାଣ୍ଡ ଧଳାଭାଲୁ ବାସ୍ନା ଶୁଙ୍ଘି ଶୁଙ୍ଘି ଆସେ କିନ୍ତୁ ହସ୍କି ପନ୍ଝାଙ୍କୁ ଦେଖି ଫେରିଯାଏ । ମଲେ ମରିବ ପଛେ କୁକୁର ପଞ୍ଝାକ ମାଡ଼ିଯାଆନ୍ତି ଧଳାଭାଲୁ ଆଡ଼କୁ । ଧଳାଭାଲୁ ହଉଚି ସବୁଠାରୁ ଶକ୍ତିଶାଳୀ ଜୀବ, ତା'ର ଗୋଟେ ଚାପୁଡ଼ାରେ ସିଲ୍ ମାଛର ମୁଣ୍ଡ ଛତୁ ହୋଇଯାଏ । ତାକୁ ଆକ୍ରମଣ କରି ଗୋଟେ ଦି'ଟା ହସ୍କି ମରିବେ ପଛେ କିନ୍ତୁ ତାକୁ ନ ମାରି ଛାଡ଼ିବେ ନାହିଁ । ଧଳାଭାଲୁ କେବଳ କୁକୁରକୁ ହିଁ ଡରେ ।

ବେଶୀ ଶୀତ ପଡ଼ିଲେ ସମୁଦ୍ର ଉପରେ ବରଫ ଛାଇଯାଏ, ଏସ୍କିମୋମାନେ ଶିକାର କରିବେ କେମିତି ? କିନ୍ତୁ ହସ୍କି ଯେ ପର୍ଯ୍ୟନ୍ତ ଅଛି ଏସ୍କିମୋମାନଙ୍କର ଶିକାର ବନ୍ଦୋବସ୍ତ ହୋଇଯିବ । ସେମାନେ ଖେଦି ଯାଆନ୍ତି ଚତୁର୍ଦ୍ଦିଗରେ ଓ ବରଫ ଶୁଙ୍ଘି ଶୁଙ୍ଘି ଯେଉଁ ଜାଗାରେ ବରଫ ତଳେ ପାଣି ଭିତରେ ସିଲ୍ ମାଛ ଥାଏ ତାକୁ ଦେଖେଇ ଦିଅନ୍ତି । ଏସ୍କିମୋ ବରଫକୁ ଆଡ଼େଇ ତେଣ୍ଟାମାରି ସିଲ୍‌କୁ ଘୋଷାଡ଼ି ଆଣେ ।




ହସ୍କି ମରିଗଲେ ତା ଚମଡ଼ାରେ ପୋଷାକ ହୁଏ, ତା ମାଂସ ଅନ୍ୟ କୁକୁରମାନେ ଖାଆନ୍ତି, ଜୀବନ ସାରା ଓ ମଲାପରେ ମଧ୍ୟ ସେ ଏସ୍କିମୋମାନଙ୍କର ସେବାରେ ଲାଗେ । କାନାଡ଼ାର ପୁଲିସ ବାହିନୀ ଏହି କୁକୁର ସାହାଯ୍ୟରେ ଜିନିଷପତ୍ର ବୋହିବା କାମ କରନ୍ତି ।



# ସାହସୀ ଓ ବିଶ୍ୱାସୀ

ପ୍ରଥମ ମହାଯୁଦ୍ଧ ସମୟରେ ଇଟାଲୀର ଜଣେ ସୈନ୍ୟ ଗୁଳିମାଡ଼ରେ ଆହତ ହୋଇ ପଡ଼ିଥିଲେ, ବଂଚିବାର ଆଶା ନଥିଲା, କିଏ ବା ଆସିବ ପାଖକୁ, ଗୁଳି ଯେ ଅନବରତ ଚାଲିଛି । କିନ୍ତୁ ଗୁଳି ଶବ୍ଦକୁ ଭ୍ରୁକ୍ଷେପ ନ କରି ଗୋଟେ ମସ୍ତବଡ଼ କୁକୁର ଆସି ଆହତ ସୈନ୍ୟକୁ ଶୁଙ୍ଘି ଦେଇ ପଳେଇଲା । କିଛି ସମୟ ପରେ ଆଉ ଗୋଟିଏ କୁକୁର ଓ ଜଣେ ରେଡ୍‌କ୍ରସ୍ କର୍ମୀ ଆସି ପହଞ୍ଚିଲେ । କୁକୁର ଦେହରେ ବନ୍ଧା ହୋଇଥାଏ ବ୍ୟାଗ୍‌ଟିଏ ଯେଉଁଥିରେ ଔଷଧ ଇତ୍ୟାଦି ଥାଏ । ରେଡ୍‌କ୍ରସ୍ କର୍ମୀ ବ୍ୟାଗ୍‌ରୁ ଔଷଧ, ଇଂଜେକ୍‌ସନ୍ ବାହାର କରି ସୈନ୍ୟଟିର ଚିକିତ୍ସା କଲେ ଓ ସେ ବଞ୍ଚିଗଲା । ଏଇଭଳି ହଜାର ହଜାର ସୈନିକଙ୍କ ପାଖରେ ଔଷଧ ଓ ରେଡ୍‌କ୍ରସ କର୍ମୀ ପହଞ୍ଚେଇବା କାମ କଲେ ଅନେକ କୁକୁର ।

ଏଇ କୁକୁରମାନେ ବେଶ୍ ବଡ଼, ଓଜନ ପ୍ରାୟ ନବେ କେ.ଜି., ଉଚ୍ଚତା ଦୁଇଫୁଟ ଉପରେ, ଦେହରେ ଲମ୍ବା ଲୋମ, ବଡ଼ ବଡ଼ ଦାନ୍ତ ଓ ଲାଞ୍ଜ ମୋଟା । ଦରକାର ପଡ଼ିଲେ ଗଧିଆ, ଭାଲୁଙ୍କ ସଙ୍ଗେ ଲଢ଼େଇ ବି କରିପାରିବ । ଏମାନଙ୍କୁ ସେଣ୍ଟ ବର୍ଣ୍ଣାଡ୍ ବୋଲି କୁହାଯାଏ । ସେ ଯେତିକି ସାହସୀ, ସେତିକି ଚାଲାଖ ଅଥଚ ଧୀରସ୍ଥିର । କିନ୍ତୁ କାହାକୁ ରକ୍ଷା କରିବାକୁ ଯାଉଥିବା ସମୟରେ ଅନ୍ୟ କେହି ବାଧାଦେଲେ ସେଣ୍ଟ ବର୍ଣ୍ଣାଡ୍ ଭୟଙ୍କର ହୋଇଉଠେ । ଯୁଦ୍ଧ ସମୟରେ ଗୁଳି ମାଡ଼କୁ ଭୟ ନ କରି ରକ୍ତର ବାସ୍ନା ଶୁଙ୍ଘି ଶୁଙ୍ଘି ହଜାର ହଜାର ଆହତ ସୈନ୍ୟମାନଙ୍କୁ ଠାବକରି ସେମାନଙ୍କର ଜୀବନରକ୍ଷା କରିଥିଲେ । ସୁଇଜରଲାଣ୍ଡକୁ ଲାଗି ଆଲ୍‌ପସ୍ ପର୍ବତମାଳା । ଆଗେ ଲୋକମାନେ ପାହାଡ଼ରେ ଚଲାପଥରେ ଯାଉଥିଲେ । ଭୀଷଣ ଥଣ୍ଡା ଜାଗା, ବରଫ ପଡ଼େ । ବରଫ ପଡ଼ିବା ସମୟରେ କିଛି ଦିଶେ ନାହିଁ ଓ ଲୋକମାନେ ବାଟ ଭୁଲିଯାଆନ୍ତି ।

ଭାଲୁ ଗଧିଆଙ୍କର ଆକ୍ରମଣର ଭୟ ଥାଏ । ଅଥଚ ଅନେକ ଲୋକ ବଞ୍ଚିଯାଆନ୍ତି ସେଣ୍ଟ ବର୍ଣ୍ଣାଡ୍ କୁକୁରମାନଙ୍କ ଦୟାରୁ ।

ଆଲପସ୍ ପାହାଡ଼ ଉପରେ କେତେକ ମଠରେ ଏଇ କୁକୁରମାନେ ପାଳିତ ହୋଇଥାଆନ୍ତି ଓ ସେମାନେ ପର୍ବତର ବିଭିନ୍ନ ସ୍ଥାନରେ ପହରା ଦିଅନ୍ତି ।



ତାଙ୍କ ବେକରେ ଫ୍ଲାସ୍କ ବନ୍ଧା ହୋଇଥାଏ । ଏମାନେ ଶୁଙ୍ଘି ଶୁଙ୍ଘି ହଜିଯାଇଥିବା ଓ ବରଫରେ ଅଧା ପୋତି ହୋଇପଡ଼ିଥିବା ପଦଯାତ୍ରୀଙ୍କୁ ଠାବ କରନ୍ତି ଓ ପ୍ରଥମେ ତାଙ୍କ ଦେହକୁ ଲାଗି କିଛି ସମୟ ଶୋଇପଡ଼ନ୍ତି । ସେଣ୍ଟ ବର୍ଣ୍ଣାଡ୍‌ର ଲମ୍ବା ଲମ୍ବା ରୁମ ଯୋଗୁ ଅଣ୍ଡାରେ ଆହତ ହୋଇଥିବା ଲୋକମାନେ ଚେଇଁ ଉଠନ୍ତି ପୁଣି ଚେତା ହରେଇଥିବା ଲୋକଙ୍କୁ ଉଷୁମ କରି କୁକୁରମାନେ ଆସ୍ତେ ଆସ୍ତେ ହଲାନ୍ତି । ଫ୍ଲାସ୍କରୁ ବ୍ରାଣ୍ଡି ବାହାର କରି ଲୋକଟି ପିଏ । ଇତିମଧ୍ୟରେ ଆଉ ଗୋଟିଏ କୁକୁର ମଠରୁ ଲୋକମାନଙ୍କୁ ଡାକି ଆଣେ । କୁକୁର ସାହାଯ୍ୟରେ ଆହତ ବ୍ୟକ୍ତିମାନେ ମଠକୁ ଆସନ୍ତି । ଶହ ଶହ ବର୍ଷ ଧରି ସେଣ୍ଟ ବର୍ଣ୍ଣାଡ କୁକୁରମାନେ ଏଇଭଳି ସେବା କରିଆସୁଛନ୍ତି । ସେଣ୍ଟ ବର୍ଣ୍ଣାଡଙ୍କର ଏକ ଅଦ୍ଭୁତ

ଶକ୍ତି ଅଛି । ସେମାନେ ପାହାଡ଼ରୁ ବରଫ ଖସିବା ପୂର୍ବରୁ ଜାଣିପାରନ୍ତି ଓ ଯାତ୍ରୀମାନଙ୍କୁ ସୁରକ୍ଷା ସ୍ଥାନକୁ ନେଇଯାଆନ୍ତି । ଛୋଟ ଛୋଟ ପିଲାଙ୍କୁ ଶୁଆଇ ଦେଲେ ତାଙ୍କୁ ନେଇ ପହଞ୍ଚେଇ ଦିଏ । ପାହାଡ଼ରେ ଭାଲୁ ଗଧିଆ ଆସିଲେ ଅଣ୍ଟାଭିଡ଼ି ଲଢ଼େଇକୁ ବାହାରି ପଡ଼ନ୍ତି ।



ଏତେ ବଳ ଏତେ ଶକ୍ତି ଥାଇ ମଧ୍ୟ ସେଣ୍ଟ ବର୍ଣ୍ଣାଡ ଭାରି ଧୀରସ୍ଥିର ଓ ଅଯଥାରେ କାହାକୁ ଆକ୍ରମଣ କରନ୍ତି ନାହିଁ କିନ୍ତୁ ଅନ୍ୟକୁ ସାହାଯ୍ୟ କରିବା ତା'ର ପ୍ରବୃତ୍ତି । ବର୍ତ୍ତମାନ ଇଉରୋପ ଓ ଆମେରିକାରେ ଅନେକ ଲୋକ ଏ ଜାତୀୟ କୁକୁର ରଖୁଛନ୍ତି । ପ୍ରଭୁଭକ୍ତ ଓ ବିଶ୍ୱାସୀ ହିସାବରେ ତା'ର ଖ୍ୟାତି ଅଛି । ସବୁ ମଣିଷମାନେ ଯଦି ଏଇ ଗୁଣ ଶିଖନ୍ତେ କେତେ ଭଲ ହୁଅନ୍ତା କହିଲ ପିଲେ ।

ହଁ– ପୁପୁ, ଇନି କହିଲେ ।

# କଡ଼ା ଆଇନ୍‌କାନୁନ୍

ସକାଳୁ ସକାଳୁ ଘରେ ଫୋନ୍ ବାଜିଲା, ବାପା ଫୋନ୍ ଉଠେଇ ଆରପାଖରୁ କିଏ କହୁଛନ୍ତି ଜାଣିଲା ମାତ୍ରେ କହିଲେ, ନମସ୍କାର ସାର୍, ମୁଁ ଏବେ ଆପଣଙ୍କ ପାଖକୁ ଯିବି ।

ବାପା ବାହାରିଗଲା ପରେ ଇନି ମା'ଙ୍କୁ ପଚାରିଲା—ବାପା କୁଆଡ଼େ ଗଲେ ?

ତାଙ୍କ ଉପର ଅଫିସରଙ୍କ ପାଖକୁ— ମା'ଉତ୍ତର ଦେଲେ ।

ବାପା ତାଙ୍କୁ ନମସ୍କାର କରନ୍ତି ? —ପଚାରିଲା ଛୋଟ ଝିଅଟି ।

ହଁ, ସେ ପରା ଉପର ଅଫିସର । ନମସ୍କାର କରିବେନି ।

ସମସ୍ତେ କ'ଣ ଉପରବାଲାଙ୍କୁ ନମସ୍କାର କରନ୍ତି କି ?

ଆଲୋ ଝିଅ ତୁ ଟି.ଭି. ରେ ଦେଖିନୁ ରଜାମାନଙ୍କୁ ମନ୍ତ୍ରୀ ନମସ୍କାର କରନ୍ତି, ମନ୍ତ୍ରୀଙ୍କୁ ସେନାପତି ନମସ୍କାର କରନ୍ତି ଓ ସମସ୍ତେ ରଜାଙ୍କ ପାଖେ ମୁଣ୍ଡ ନୁଆଁଇ ବସନ୍ତି । ଟିକିଏ ଭାବି ମା' କହିଲେ ଆରେ ଗୋଟେ ମଜା କଥା ମନେ ପଡ଼ିଲା ଶୁଣ—

ଗଧିଆମାନେ ଦଳ ଦଳ ହୋଇ ରୁହନ୍ତି ଓ ତାଙ୍କର ଜଣେ ଦଳପତି ଥାଏ । ତା'ପରେ ସେମାନେ ଛୋଟ ଛୋଟ ଦଳ ହୋଇ ଯାଆନ୍ତି ଶିକାର କରିବା ପାଇଁ ଓ ପ୍ରତି ଛୋଟ ଦଳରେ ମଧ୍ୟ ଜଣେ ଜଣେ ନେତା ଥାଆନ୍ତି । ଏଇଭଳିଆ ଗଧିଆମାନଙ୍କ ମଧ୍ୟରେ ବଡ଼ ନେତା, ସାନ ନେତା ଓ ସାଧାରଣ ନେତା ଥାଆନ୍ତି । ବଡ଼ ନେତାଙ୍କୁ ଦେଖିଲା ମାତ୍ରେ ସାଧାରଣ ଗଧିଆ ଲାଞ୍ଜକୁ ଦି'ଗୋଡ଼

ମଝିରେ ଜାକି ମୁଣ୍ଡକୁ ସାମାନ୍ୟ ପୋତି ଠିଆହୁଏ । ଯଦି ନକରେ ବଡ଼ ନେତା କିଛି କହିଲା ପୂର୍ବରୁ ସାନ ନେତା ପ୍ରଚଣ୍ଡ କାମୁଡ଼ାଟେ ଦେବ । ପୁଣି ସାନ ନେତା ବଡ଼ ନେତା ପାଖକୁ ଆସିଲେ ଲାଞ୍ଜ ଜାକିବା ଦରକାର ନାହିଁ, ଲାଞ୍ଜ ଝୁଲିବ କିନ୍ତୁ ଉପରକୁ ଟେକି ପାରିବ ନାହିଁ । ଲାଞ୍ଜ ଟେକିଲେ ପ୍ରବଳ ମାଡ଼ ଖାଇବ ।

ଆଫ୍ରିକାରେ ବବୁନ ବୋଲି ଏକ ଜାତିର ମାଙ୍କଡ଼ ଅଛନ୍ତି, ତାଙ୍କର ବି ନେତା ଥାଏ ଓ ତାଙ୍କୁ ସମସ୍ତେ ଆଉଁସନ୍ତି (ଯିମିତି ଆମର ବଡ଼ ଲୋକମାନେ ଗୋଡ଼ ଘଷାନ୍ତି) । ବୟସ୍କା ମାଈ ବବୁନ୍ ଦି'ହାତରେ ଆଉଁସିବା ଅଧିକାର ପାଇଥାଏ କିନ୍ତୁ ବୟସ୍କ ପୁରୁଷ ବବୁନ୍ ଗୋଟେ ହାତରେ ଆଉଁସିଥାଏ । ତଳିଆ ମାଙ୍କଡ଼ କେବଳ ଆଙ୍ଗୁଠିଟେ ବ୍ୟବହାର କରିପାରିବ ଓ ନୂଆ ନୂଆ ଟୋକା



ମାଙ୍କଡ଼ ନେତାଙ୍କ ଦୂରରେ ବସି ଅନେଇବାର ସୁଯୋଗ ପାଇବେ, ପାଖକୁ ଆସିଲେ ବ୍ରହ୍ମଚାପୁଡ଼ା ମିଳିବ । ବବୁନ ମାଙ୍କଡ଼ଙ୍କର ଏଇଭଳିଆ ଶୃଙ୍ଖଳା ନ ଥିଲେ ସେମାନେ କ'ଣ ଚଳି ପାରିବେ ? ସବୁବେଳେ ଚିତାବାଘ, ଗଧିଆ

ବାଘ, ହେଟାବାଘଙ୍କର ଭୟ । ତେଣୁ ସମସ୍ତେ ନେତାଙ୍କର ଆଦେଶ ମାନିବା ପାଇଁ ବାଧ୍ୟ । ବବୁନ୍ର ନଖ ନାହିଁ ତେଣୁ ଦଳବଦ୍ଧ ହୋଇ ପ୍ରତି-ଆକ୍ରମଣ ନ କଲେ ବଞ୍ଚି ପାରିବେ ନାହିଁ । ବାଘ ତାଙ୍କୁ ଆକ୍ରମଣ କରିବା ପୂର୍ବରୁ ବବୁନମାନେ ବାଘକୁ ଆକ୍ରମଣ କରନ୍ତି ଓ ସବୁଠୁଁ ଆଗରେ ଥାଏ ନେତା ।

ଥରେ ଗୋଟିଏ ବବୁନ ଦଳ ଜଙ୍ଗଲ ଗୁମ୍ଫାରେ ରହୁଥିଲେ । ପିଲାଛୁଆଙ୍କୁ ନେଇ ଦଳଟି ଫେରିବା ସମୟରେ ଚିତାବାଘଟିଏ ଛପିକରି ରହିଥାଏ ସେମାନଙ୍କ ମଧ୍ୟରୁ ଜଣଙ୍କୁ ମାରିବା ପାଇଁ, ବବୁନମାନେ ଏକଥା ଜାଣିପାରିଲେ । ଦି'ଟା ମାଙ୍କଡ଼ ଚୁପ୍‌ଚାପ୍ ଚିତାବାଘ ପଛରେ ପହଞ୍ଚି ଜଣେ ତା'ପିଠିକୁ କାମୁଡ଼ି ଦେଲା ଆଉ ଜଣେ ତଣ୍ଟିକୁ କାମୁଡ଼ି ଝୁଲି ପଡ଼ିଲା, ବାଘ ମରିଗଲା ।

ବାଘ, ସିଂହ ଏମାନଙ୍କର ମଧ୍ୟ କେତେକ ନିୟମ ଅଛି । ତମେମାନେ ଜାଣିଚ ଦି'ଟା ବାଘ ଗୋଟେ ଜାଗାରେ ରହନ୍ତି ନାହିଁ । ବାଘ ତା' ଇଲାକା ଚିହ୍ନଟ୍ କରେ । ଆମେ ଆମର ଜମିବାଡ଼ିରେ କାନ୍ଥ ପକେଇ କିମ୍ବା ଖୁଣ୍ଟ ପକେଇ ଚିହ୍ନଟ କରୁ । ବାଘ ତା' ଇଲାକର ସୀମା ଚାରିପଟେ ବିଭିନ୍ନ ସ୍ଥାନରେ ପରିସ୍ରା କରି ଦେଇ ଆସେ । ସାଧାରଣତଃ ସେ ପରିସ୍ରା ବାସ୍ନା ଶୁଙ୍ଘି ଅନ୍ୟ ବାଘ ଇଲାକା ଭିତରକୁ ପଶନ୍ତି ନାହିଁ, ଯଦି ପଶେ ଘମାଘୋଟ ଲଢ଼େଇ ହବ । ସିଂହମାନେ ସେଇଭଳି ନିଜ ଇଲାକା ଦର୍ଶେଇ ଦିଅନ୍ତି ।

ସମୁଦ୍ରର ସି-ଗଲମାନଙ୍କର ନୀତିନିୟମ ତ ଆହୁରି ବିଚିତ୍ର । ସେମାନେ ଦଳ ଦଳ ହୋଇ ରୁହନ୍ତି ଓ ପ୍ରତ୍ୟେକଙ୍କ ପାଇଁ ମାତ୍ର ଛଅ ଫୁଟ ଜାଗା ମିଳେ, ସେତିକିରେ ସେମାନେ ବସା କରନ୍ତି । ସେମାନେ ଦଳବଦ୍ଧ ହୋଇ ନ ରହିଲେ, ଅନ୍ୟାନ୍ୟ ବଡ଼ ଚଢ଼େଇମାନଙ୍କଠାରୁ ସେମାନେ ରକ୍ଷା ପାଇବେ କିପରି ? କେହି

କାହାର ଜାଗାରେ ପଶିବେ ନାହିଁ । ଯଦି ଗୋଟେ ଗଲ୍ ଆଉ ଗୋଟେ ଗଲ୍ ଜାଗାରେ ପଶିବା ପାଇଁ ଚେଷ୍ଟା କରେ ମାଡ଼ଗୋଳ ଆରମ୍ଭ ହୋଇଯାଏ ଏବଂ ମାଡ଼ଗୋଳର ମଧ୍ୟ ନିୟମ ଥାଏ । ଥରେ ଗୋଟେ ବୟସ୍କ ଚଢ଼େଇ ଅଳ୍ପବୟସ୍କ ଚଢ଼େଇଙ୍କ ବସା ପାଖକୁ ପଶିଗଲା । ଅଳ୍ପ ବୟସ୍କ ଚଢ଼େଇ ତା ଆଡ଼କୁ ଅନେଇଲା ଓ ଡେଣା ସାମାନ୍ୟ ମେଲେଇଲା (ସେମାନଙ୍କ ଭାଷାରେ ସାବଧାନ ଘୁଞ୍ଚିଯାଅ) । କିନ୍ତୁ କଳିହୁଡ଼ା ପଡ଼ୋଶୀ ଘୁଞ୍ଚନ୍ତା କିଆଁ ? ତେଣୁ ରାଗି ଯାଇଥିଲା (ମଣିଷ ଆଉ ଜଣଙ୍କୁ ଠେଙ୍ଗା ଉଞ୍ଚେଇବା ଭଳି କଥା) । ସେ ପୁରୁଣା ଗାଲୁଆ ଚଢ଼େଇ ତଥାପି ଗଲାନି । ଟୋକା ଚଢ଼େଇ ଆଉ ସମ୍ଭାଳି ନପାରି ଚିହିଁକି ଆସି ଦି'ଡେଣାରେ ପୁରୁଣା ଚଢ଼େଇକୁ ପିଟିଲା ଓ ଆଉ ଟିକିଏ ହେଇଥିଲେ ଖୁମ୍ପି ଦେଇଥାନ୍ତା । ସେତିକିରେ ସେ ଘୁଞ୍ଚିଗଲା ଓ ଲଢ଼େଇ ବି ସରିଲା । ସିଗଲ୍ ନିଜ ଛୁଆକୁ ଭାରି ଭଲପାଆନ୍ତି କିନ୍ତୁ ଅନ୍ୟ ବସାର ଛୁଆ ଘରକୁ ଆସିଲେ ମାରି ଘଉଡ଼େଇ ଦିଅନ୍ତି ।

ଛୁଆଙ୍କ ଖାଇବା ଏବଂ ମା'ଙ୍କର ଖୁଆଇବାରେ ମଧ୍ୟ ନିୟମ ଥାଏ । ପ୍ରତ୍ୟେକ ଚଢ଼େଇର ଥଣ୍ଟ ତଳେ ଗୋଟେ ନାଲିଆ ଦାଗ ଥାଏ । ଛୁଆ ନିଜ ଥଣ୍ଟରେ ନାଲିଆ ଦାଗକୁ ଟିକେ ଖୁମ୍ପି ଦେଇ ଆଁ କରିବ ତେବେ ଯାଇ ମା' ଖୁଆଇବ । ଛୁଆ ଯଦି ନାଲିଆ ଜାଗାକୁ ନ ଖୁମ୍ପନ୍ତି ମା' ଖୁଆଇବ ନାହିଁ, ଯଦି ଦୈବାତ୍ ଛୁଆ ନ ଖୁମ୍ପିଲା ଓ ମା' ଖୁଆଇବା ପାଇଁ ଚାହିଁଲା ସେ ଛୁଆ ଖାଇବ ନାହିଁ ।

ସିଗଲ୍ ଲିଡରଙ୍କ ଆଗରେ ସାନ ସିଗଲ୍ ମୁଣ୍ଡ ଗୁଞ୍ଜି ବସିବା ପାଇଁ ବାଧ୍ୟ । ବେକ ଲମ୍ବେଇବା ହଉଚି  କେବଳ ବଡ଼ବଡ଼ିଆଙ୍କ  କାମ । ବଡ଼ବଡ଼ିଆଙ୍କ ଆଗରେ ସାନ ସିଗଲ୍ ବେକ ଲମ୍ବେଇ ପାରିବେ ନାହିଁ ଓ ଥରେ ସିଗଲ୍ ବେକ

ଗୁଞ୍ଜିଦେଲେ ଯେତେ ଶତ୍ରୁତା ଥିଲେ ଆଉ ଗୋଟେ ସିଗଲ୍ ଆକ୍ରମଣ କରିବ ନାହିଁ । ''ଛାଡ଼ ହୋ ବିଚରା ବେକ ଗୁଞ୍ଜିଲାଣି ଆଉ କାହିଁକି ମାରିବା ?'' ବୋଧହୁଏ ସେ ମନକୁ ମନ କୁହେ ।

ହଁ ସେ ଚଢ଼େଇ ନିଜ ବେଶଭୂଷା ବିଷୟରେ ଭାରି ସାବଧାନ । ତା'ପରଗୁଡ଼ିକ କେମିତି ସଫା ଚକ୍‌ଚକ୍ ରହିବ ସେଥିପ୍ରତି ସବୁବେଳେ ନଜର ରଖିଥାଏ । ମଝିରେ ମଝିରେ ପାଣିରେ ଗାଧୋଇ ଥଣ୍ଟରେ ନିଜ ପରକୁ ସଜେଇ ଦିଏ । ସବୁବେଳେ ସଫାସୁତୁରା ରହିବା ସେମାନଙ୍କର ନିୟମ ।



# ଠକ ଓ ଅଳସୁଆ

ବସନ୍ତ ଋତୁ ଆସିଲା । ଦିନେ ସକାଳେ ପୁପୁ ଇନି ବାରଣ୍ଡାରେ ସଉପ ଉପରେ ବସି ପାଠ ପଢୁଥାନ୍ତି, ସାମନା ଗଛ ଉପରୁ ଶୁଭିଲା କୁହୁ । ପୁପୁ ଚୁପ୍ ଚୁପ୍ କରି କହିଲା କୋଇଲି । କାଇଁ ଦେଖେ କହି ଇନି ଗଛ ଡାଳକୁ ଅନେଇଲା ।

ଧେତ୍ ବୋକୀ କୋଇଲି କ'ଣ ସହଜରେ ଦେଖାଯିବ ? ସେ ପରା ଗଛ ଡାଳରେ ଲୁଚିକରି ଥାଏ । ଭାରି ଚଲାକ୍ ଓ ଅଳସୁଆ । ଏତେ ଚଲାକ୍ ଯେ କାଉ ବସାରେ ଅଣ୍ଡା ଦେଇ ଚୁପ୍‌ଚାପ୍ ପଳେଇ ଯାଏ ଓ କାଉ ବିଚରା ସେ ଅଣ୍ଡାକୁ ଚିହ୍ନି ନପାରି ଉଷୁମାଏ । ଅଣ୍ଡା ଫୁଟି କୋଇଲି ଛୁଆ ହେଲା ପରେ ତାକୁ କାଉ ଖୁଆଏ । ଯେମିତି ଟିକେ ବଡ଼ ହୁଏ କୋଇଲି ପଳାଏ । ଥ୍ୟାଙ୍କ ୟୁ ମଧ କହେ ନାହିଁ ।

ବାପା ଟିକିଏ ଦୂରରେ ଚଉକିରେ ବସି ଖବରକାଗଜ ପଢୁଛନ୍ତି । ସାମାନ୍ୟ ହସି କହିଲେ— ପୁପୁ ଠିକ୍ କହିଛି, କିନ୍ତୁ କୋଇଲି କ'ଣ କେବଳ କାଉ ବସାରେ ଅଣ୍ଡା ଦିଏ ?

ତେବେ— ପଚାରିଲେ ପିଲାମାନେ ।

ଶୁଣ—

କୋଇଲି ସାରା ପୃଥିବୀରେ ଥାଆନ୍ତି । ୟୁରୋପରେ ଥିବା କୋଇଲି ଶହେ କୋଡ଼ିଏ ପ୍ରକାର ଚଢ଼େଇଙ୍କ ବସାରେ ଅଣ୍ଡା ଦିଅନ୍ତି । ସେ ଅଣ୍ଡା ଦେବାର କିଛିଦିନ ପୂର୍ବରୁ ଅନ୍ୟାନ୍ୟ ଛୋଟ ଛୋଟ ଚଢ଼େଇଙ୍କର ବସା ଖୋଜେ । ତାପରେ ଯେ କୌଣସି ଗୋଟିଏ ଚଢ଼େଇର ବସାକୁ ବାଛେ । ପାଖ ଗଛର ଘଞ୍ଚ ଡାଳରେ ଲୁଚି ରହି ଲକ୍ଷ୍ୟ କରେ ସେ ଚଢ଼େଇ କେତେବେଳେ ଯାଉଚି, କେତେବେଳେ ଫେରୁଚି । ଏଭଳି କିଛିଦିନ ଲକ୍ଷ୍ୟ କଲା ପରେ ଯେବେ ସେ ଚଢ଼େଇଟି ଅଣ୍ଡା ଦେଇ ଉଡ଼ିଯାଏ ଖାଦ୍ୟ ସଂଗ୍ରହ ପାଇଁ, କୋଇଲି ଧଡ୍ କରି ତା ବସାରେ

ପହଞ୍ଚେ । ସେ ଚଢ଼େଇର ଅଣ୍ଡାଟିକୁ ପ୍ରଥମେ କାଢ଼ିଦିଏ ଓ ନିଜେ ଅଣ୍ଡା ଦେଇଦିଏ । ଏସବୁ କଥା ପାଞ୍ଚ ସେକେଣ୍ଡ ମଧ୍ୟରେ ହେଇଯାଏ । ଅଧିକାଂଶ ସମୟରେ କୋଇଲି ଚୋରି କରିଥିବା ଅଣ୍ଡାକୁ ଖାଇଦିଏ । ଏଇଭଳି ଦଶବାରଟି ବସାରେ କୋଇଲି ଅଣ୍ଡା ଦେଇଥାଏ । ବେଳେ ବେଳେ ଯେଉଁ ବସାରେ ଏକାଧିକ ଅଣ୍ଡା ଥାଏ କୋଇଲି ଅନ୍ୟାନ୍ୟ ଅଣ୍ଡାକୁ ଘୁଞ୍ଚେଇ ନିଜ ଅଣ୍ଡାଟି ରଖିଦିଏ ।

ସେ ପକ୍ଷୀର ଅଣ୍ଡାରୁ ଛୁଆ ହେଲା ପରେ କୋଇଲି ଛୁଆ ସାଙ୍ଗରେ ଲଢ଼େଇ କରନ୍ତିନି ?— ପଚାରିଲେ ପୁପୁ ଓ ଇନି ।

ନା— ସେ ସୁଯୋଗ ମିଳେ ନାହିଁ । କୋଇଲିର ଅଣ୍ଡା ସବୁଠୁଁ ଆଗ ଫୁଟେ ଓ ସେ ଛୁଆ ଏଡ଼େ ଚଲାକ୍ ଯେ ଅନ୍ୟ ଅଣ୍ଡାଗୁଡ଼ିକୁ ଠେଲି ବାହାର କରିଦିଏ । ସେମାନଙ୍କ ମା କିଛି ଜାଣିପାରେ ନାହିଁ । ସେ ଅଣ୍ଡାକୁ ଉଷୁମେଇବା ଓ ଛୁଆକୁ ଖୁଆଇବା କାମ ଚଲେଇଥାଏ ।



ଚରଚରି (ଇଂରାଜୀ ପିପିଟ୍) ଏଇଭଳି ଏକ ଚଢ଼େଇ ଯାହାର ବସା କୋଇଲି ବ୍ୟବହାର କରେ । ବିଚାରୀ ଚରଚରି ଛୋଟ ଚଢ଼େଇଟିଏ, ଘରଚଟିଆ ଭଳି ହବ । ତା ବସାରେ କୋଇଲି ଅଣ୍ଡା ଦିଏ । କୋଇଲି ଛୁଆ ବେଶ୍ ବଡ଼ । କୋଇଲିର ଛୁଆଟି ମା ଚରଚରି ଠୁଁ ବି ବଡ଼ । ଚରଚରି ବସାକୁ ପୋକଜୋକ ଧରି ଆସେ ଓ କୋଇଲି ଛୁଆ ଆଁ କରେ । ବିଚାରୀ ଚରଚରି ତାକୁ ଖୁଏଇଚାଲେ । ସେ ତ ଟିକି ଚଢ଼େଇଟିଏ ତେଣୁ କୋଇଲି ପିଠିରେ ବସି ତାକୁ ଖୁଆଏ । ବେଳେ ବେଳେ ପାଖରେ ବସା ବାନ୍ଧିଥିବା ଅନ୍ୟ ଛୋଟ ଛୋଟ ଚଢ଼େଇମାନେ ଏ ଭୀମ ଭଳିଆ ଛୁଆକୁ ଖୁଆନ୍ତି କାରଣ ଚରଚରି ନିଜେ କେତେ ଖୁଆଇବ ।

ଦେଖୁ ଦେଖୁ କୋଇଲି ଛୁଆ ବେଶ୍ ବଡ଼ ହୋଇଯାଏ । ଇତିମଧ୍ୟରେ ଶୀତଦିନ ଆସିଯାଇଥାଏ । ୟୁରୋପରେ ସବୁଆଡ଼େ ବରଫ । ଚଢ଼େଇମାନେ ଉଡ଼ି ଉଡ଼ି ଦୂରସ୍ଥାନକୁ ପଳାନ୍ତି ପାଣି ଓ ଖାଦ୍ୟ ଅନ୍ୱେଷଣରେ । ମା କୋଇଲି ଉଡ଼ି ଉଡ଼ି ପଳେଇ ଯାଇଥାଏ ସୁଦୂର ଆଫ୍ରିକା କିମ୍ବା ଏସିଆକୁ । ଏଣେ କୋଇଲି ଛୁଆ ବଡ଼ ହେଲାବେଳକୁ ଚରଚରି ପଳେଇଯାଇଥାଏ ।

କିନ୍ତୁ ସେ କ'ଣ ଅସୁବିଧାରେ ପଡ଼େ । ସେ ଖୋଜିବୁଲେ ସାଁବାଳୁଆଙ୍କୁ ଯାହାକୁ ଖାଇଲେ ଦେହରେ ବହୁତ ଶକ୍ତି ହବ । ସାଁବାଳୁଆ ଖାଇ ମଜଭୁତ୍ ହୋଇ କୋଇଲି ଉଡ଼ିଚାଲେ ଆଫ୍ରିକା କିମ୍ବା ଏସିଆ ମହାଦେଶକୁ ।

କିମିତି ? ବାଟ କିଏ ବତେଇଲା ?

ସେ ବଡ଼ ଆଶ୍ଚର୍ଯ୍ୟର କଥା, ଏପର୍ଯ୍ୟନ୍ତ କେହି କାରଣ ଜାଣି ପାରିନାହାନ୍ତି । କେମିତି ଜାଣେ ଯେ ତାକୁ ବହୁତ ବାଟ ଯିବାକୁ ପଡ଼ିବ ସେଥିପାଇଁ ପେଟେ ପେଟେ ସାଁବାଳୁଆ ଖାଇ ଦେହରେ ଚର୍ବି ଜମାଏ । ଏକ ନିଃଶ୍ୱାସରେ ଉଡ଼ି ସେ ଆଫ୍ରିକା ଦେଶରେ ପହଞ୍ଚେ ଯେଉଁଠି ବରଫ ନାହିଁ ଅଥଚ ଖାଇବା ପାଇଁ ମିଳେ ପ୍ରଚୁର ପୋକଜୋକ ଓ ପିଇବାକୁ ପାଣି ।

ଖରାଦିନ ସରିବା ପରେ ସେ ଆଫ୍ରିକାରୁ ଉଡ଼ି ଉଡ଼ି ୟୁରୋପକୁ ଫେରିଆସେ । ସେତେବେଳକୁ ବସନ୍ତ ଋତୁ, ମାଈ କୋଇଲି ପୁଣି ସାଁବାଲୁଆ ଖାଏ, ତାଦ୍ୱାରା ଶରୀର ପୁଣି ମଜଭୁତ୍ ହେଇଯାଏ ଓ ବାରଟା ପର୍ଯ୍ୟନ୍ତ ଅଣ୍ଡା ଦବା ପାଇଁ ସକ୍ଷମ ହୁଏ । ଅଣ୍ଡା ଦବାର ସମୟ ଆସିଲେ କୋଇଲି ଗୁପ୍ତଚରଗିରି କରି ବିଭିନ୍ନ ବସା ଖୋଜିବୁଲେ । ହଁ ଅଣ୍ଡା ଦେବାବେଳେ ସେ ଚାଲାଖ୍ କରି ଯୋଉ ଚଢ଼େଇଙ୍କ ଅଣ୍ଡା ରଙ୍ଗ ଓ ସାଇଜ୍‌ରେ କୋଇଲି ଅଣ୍ଡା ସଙ୍ଗେ ମିଶିଯାଏ ସେ ଚଢ଼େଇଙ୍କ ବସାରେ ସେ ଅଣ୍ଡାଦିଏ ।

ତା ମାନେ କୋଇଲି ଭାରି ଦୁଷ୍ଟ ।

ହଁ, ପକ୍ଷୀମାନେ ମଧ୍ୟ ସେକଥା ଜାଣନ୍ତି । ସେମାନେ କୋଇଲି ଦେଖିଲେ ତା ଉପରେ ଚଢ଼ଉ କରନ୍ତି । ସେଥିପାଇଁ କୋଇଲି ସବୁବେଳେ ଲୁଚି ଲୁଚି ରହେ । ଯଦି କୌଣସି ଛୋଟ ଚଢ଼େଇ କୋଇଲିକୁ ତଡ଼ି ନ ପାରିଲା ସେ ବସା ଛାଡ଼ି ପଳେଇଯାଏ ।

ଆହୁରି ଆଶ୍ଚର୍ଯ୍ୟ କଥା ଯେ କୋଇଲିକୁ ସୁନ୍ଦର ବୋବେଇବା ଓ ଅନ୍ୟ ଚଢ଼େଇ ବସାରେ ଅଣ୍ଡା ଦେବା ତା ମା ଶିଖାଏ ନାହିଁ । ସାଧାରଣତଃ ଜୀବଜନ୍ତୁ ପଶୁପକ୍ଷୀମାନେ ଶିକାର କରିବା, ଦଉଡ଼ିବା, ବିପଦ ସଙ୍କେତ ବୁଝିପାରିବା, ଉଡ଼ିବା ପ୍ରଭୃତି ମାଠାରୁ କିମ୍ୱା ଗୋଠରୁ ଶିଖନ୍ତି କିନ୍ତୁ କୋଇଲି ସବୁବେଳେ ଏକୁଟିଆ ଓ ନିଜେ ନିଜେ ସବୁ ଶିଖେ ।

ଆଉ କେଉଁ ଚଢ଼େଇ ଅନ୍ୟ ବସାରେ ଅଣ୍ଡା ଦିଅନ୍ତି ? ପଚାରିଲେ ପୁପୁ ଓ ଇନି ।

# ମିଳିମିଶି ଚୋରି

ପୁପୁ-ଇନି ବାପାଙ୍କୁ ପଚାରିଲେ କୋଇଲି ପରି ଆଉ କୋଉ ଚଢ଼େଇ ଅନ୍ୟ ବସାରେ ଅଣ୍ଡା ଦିଅନ୍ତି ?

ବାପା କହିଲେ –



ଏଭଳି ପାଞ୍ଚ କିସମର ଚଢ଼େଇ ଅଛନ୍ତି ସେମାନଙ୍କ ମଧ୍ୟରୁ ମଧୁ ସଂକେତକ (ହନି ଗାଇଡ୍) ଗୋଟିଏ । ଏ ଛୋଟ ଚଢ଼େଇଟି ମହୁ ଖାଇବା ପାଇଁ ଭାରି ଭଲପାଏ । ମହୁ ଓ ମହୁଫେଣା ଖାଇବା ପାଇଁ ସିନା ଭଲପାଏ କିନ୍ତୁ ମହୁଫେଣାକୁ ଆକ୍ରମଣ କରିବା କ'ଣ ସହଜ କଥା ? ଏତେ ପରିଶ୍ରମ କରିବ କାହିଁକି ? ତେଣୁ ସେ ଖୋଜିବୁଲେ ଗଡ଼ଭାଲୁକୁ ।

ଗଡ଼ଭାଲୁ (ଇଂରାଜୀରେ ରାଟେଲ୍) ଆଫ୍ରିକା ଓ ଏସିଆରେ ବାସ କରେ । ଭାରତ ବର୍ଷରେ ଓ ଓଡ଼ିଶାରେ ମଧ୍ୟ ଗଡ଼ଭାଲୁ ଥାଆନ୍ତି । ଗଡ଼ଭାଲୁର ଉଚ୍ଚା ଫୁଟେ ମାତ୍ର ଓ ଲମ୍ବା ପ୍ରାୟ ଅଢ଼େଇ ଫୁଟ କିନ୍ତୁ ସାହସ ତା'ର ବାଘଟାର ।

ବଡ଼ ଭାଲୁକୁ ଡରେଇ ହବ ଗଡ଼ଭାଲୁକୁ ନୁହେଁ । ଏତେ ଛୋଟିଆ ଜୀବଟିଏ ଅଥଚ ବଣମଇଁଷିର ମୁକାବିଲା କରେ, କୁଦିପଡ଼ି ମଇଁଷିର ବେକକୁ ଝୁଣି ପକାଏ । ଅଜଗର ସାପକୁ ମାରିଦିଏ । ଏହାର ବାଲୁଆ ଦେହ ଓ ମୋଟା ଚମଡ଼ା, ଶକ୍ତ ଦାନ୍ତ, ବଡ଼ ବଡ଼ ନଖ, ସାହସ ଓ ଚଞ୍ଚଳତା ଯୋଗୁଁ ବିଷାକ୍ତ ସାପ, ବିଛା, କଇଁଚ ସବୁ ମାରିବା ପାଇଁ ସକ୍ଷମ ହୁଏ । ସେଥିପାଇଁ ଗଡ଼ଭାଲୁକୁ ଅନ୍ୟ ଜୀବଜନ୍ତୁମାନେ ମୁକାବିଲା କରିବା ପାଇଁ ଡରନ୍ତି ଓ ତା'ଠୁ ଦୂରରେ ଥାଆନ୍ତି । ଏପରିକି ବଳିଆ କୁକୁରମାନଙ୍କର ସେ ଏକୁଟିଆ ମୁକାବିଲା କରିପାରେ । ଯଦି ଦେଖିଲା ସେ ଲଢ଼େଇରେ ପାରୁନାହିଁ, ଲାଞ୍ଜ ପାଖ କଣାରୁ ଭସ୍ କରି ତରଳ ପଦାର୍ଥ ବାହାର କରେ ଯାହାଦ୍ୱାରା ସ୍ଥାନଟି ଦୁର୍ଗନ୍ଧରେ ପୂରିଯାଏ ଓ ତାକୁ ଆକ୍ରମଣ କରୁଥିବା ବଳିଆ କୁକୁର କିମ୍ୱା ବାଘ ଘୁଞ୍ଚିଯାଆନ୍ତି ।

ଦିନବେଳେ ଗଡ଼ଭାଲୁ ଶୋଇଥାଏ, ପକ୍ଷୀର ଡାକ ଶୁଣିଲାମାତ୍ରେ ଚଟ୍‌ପଟ୍ ଉଠେ । ପକ୍ଷୀକୁ ଦେଖିଲା ମାତ୍ରେ କି ଖୁସି ସେ ନହୁଏଁ । ଅଳସ ଭାଙ୍ଗି ପକ୍ଷୀର ପିଛା କରେ ସେ ।

ଗଡ଼ଭାଲୁ ପକ୍ଷୀ ପଛେ ପଛେ ଯାଏ, ଲମ୍ୱାରାସ୍ତା ହେଲେ ପକ୍ଷୀ ଡାଳକୁ ଡାଳ ବସି ଗଡ଼ଭାଲୁକୁ ବିଶ୍ରାମ କରିବା ପାଇଁ ସୁଯୋଗ ଦିଏ । ଶେଷରେ ପକ୍ଷୀ ପହଞ୍ଚେ ମହୁଫେଣା ପାଖରେ । ମହୁକୁ ଦେଖି ଭାଲୁର କି ଆନନ୍ଦ, ଖପ୍ ଖପ୍ ଗଛରେ ଚଢ଼ି ଫଣାଟିକୁ ଚହଲେଇ ଦିଏ । ମହୁମାଛିମାନେ ରାଗିଯାଇ ତାକୁ ଆକ୍ରମଣ କରନ୍ତି । କିନ୍ତୁ କ'ଣ କରିବେ ଭାଲୁ ଦେହରେ ତାଙ୍କ ନାହୁଡ଼ ପଶେନି । ଫଣାକୁ ଚିପି ଚିପି ମହୁତକ ଗଡ଼ଭାଲୁ ପିଇଯାଏ ।

ଏଇସବୁ ଝମେଲା ଚାଲିଥିବା ସମୟରେ ପକ୍ଷୀଟି ବେଶ୍ ଦୂରରେ ବସି ଅନିଶା କରୁଥାଏ । ଦୂରରେ ନ ବସିଲେ ମହୁମାଛିମାନେ କାଳେ ତାକୁ ଆକ୍ରମଣ କରିବେ । ଭାଲୁ ମହୁ ପିଇ ସାରିଲା ପରେ ଓ ମହୁମାଛି ପଳେଇଗଲା ପରେ ହନିଗାଇଡ୍ ଆସି ଯାହା ବଳିଥାଏ ତାକୁ ଖାଏ । ସେତକ ତା ପାଇଁ ଯଥେଷ୍ଟ ।

ପକ୍ଷୀ ପଛରେ ଗୋଡ଼େଇ ମହୁଫେଣା ପାଖେ ପହଞ୍ଚିବା ଗଡ଼ଭାଲୁ ତା ମାଠୁଁ ଶିଖିଥାଏ କିନ୍ତୁ ଆଶ୍ଚର୍ଯ୍ୟର କଥା ପକ୍ଷୀ ତା ମାଠାରୁ ଏକଥା ଶିଖିନାହିଁ କାରଣ ସେ ଅନ୍ୟ ଚଢ଼େଇ ବସାରେ ପାଳିତ । ସେ ମହୁଫେଣାକୁ ଆବିଷ୍କାର କରିବା, ଗଡ଼ଭାଲୁକୁ ଖୋଜିବା ଆପେ ଶିଖିଥାଏ । ଏ ପର୍ଯ୍ୟନ୍ତ ଜଣାପଡ଼ିନି ଯେ ସେ କେମିତି ଶିଖିଲା ।

ପକ୍ଷୀ ଓ ଗଡ଼ଭାଲୁର ମିଳିମିଶି ଡକାୟତି କରିବା ଗପ ଶୁଣି ପୁପୁ ଇନି ଖୁବ୍ ଆଶ୍ଚର୍ଯ୍ୟ ହେଲେ ଓ ପଚାରିଲେ ଆଉ ଇମିତି କୌଣସି ଜୀବଜନ୍ତୁ ପଶୁପକ୍ଷୀ ମିଳିମିଶି ଶିକାର କରନ୍ତି କିମ୍ୱା ବସା ବାନ୍ଧନ୍ତି କି ?

ଏଭଳି ଅନେକ ଦୃଷ୍ଟାନ୍ତ ଅଛି କିନ୍ତୁ ତା ପୂର୍ବରୁ ମୁଁ ଯେତିକି କଥା କହିଛି ସେ ସଂକ୍ରାନ୍ତରେ କିଛି ପ୍ରଶ୍ନ ପଚାରିବି ।

୧. ପୁଲିସ ବିଭାଗରେ ଚୋର ସଂଧାନ ପାଇଁ ବ୍ୟବହାର ହେଉଥିବା ତିନୋଟି ଜାତିର କୁକୁରଙ୍କ ନାମ କୁହ ?

୨. ଆଲ୍‌ସେସିଆନ୍ କେଉଁ ଦେଶର କୁକୁର ?

୩. ଯେଉଁଭଳି କୋଇଲି ୟୁରୋପ ଓ ଆଫ୍ରିକା ମହାଦେଶରୁ ଉଡ଼ିଆସେ ସେଭଳି ବିଦେଶରୁ ଭାରତକୁ ଆସୁଥିବା ତିନୋଟି ଜାତୀୟ ପକ୍ଷୀଙ୍କର ନାମ କୁହ ?

ପୁପୁ ଇନି ଉତ୍ତର ଦେବାପାଇଁ ଦଶ ମିନିଟ୍ ସମୟ ନେଲେ । ଆଚ୍ଛା ତୁମେ ପିଲାମାନେ ଉତ୍ତର ଦେଇ ପାରିବ ?



# କଳାକାର ଓ କାରିଗର

ଦିନେ ସକାଳୁ ସକାଳୁ ରାସ୍ତାରେ ବାହାଘର ପାର୍ଟି ବ୍ୟାଣ୍ଡ ବଜାଇ ଯାଉଥିଲେ । ବରକୁ ଦେଖି ପୁପୁ କହିଲା– ଦେଖ, ବର କେମିତି ବେଶ ହୋଇଛି, ମୁଣ୍ଡରେ ପଗଡ଼ି ବାନ୍ଧିଛି । ବାହାଘର ପାଇଁ ଇମିତି ବେଶ ହୁଅନ୍ତି କି ?– ପଚାରିଲା ଇନି ।

ହଁ ଖାଲି ମଣିଷ କାହିଁକି, ଜୀବଜନ୍ତୁ ମଧ୍ୟ ସେମିତି ବେଶ ହୁଅନ୍ତି ।

ହଁ ତୁ ମିଛ କହୁଛୁ ।

ଚାଲୁନୁ ବାପାଙ୍କୁ ପଚାରିବା ।

ବାପା କହିଲେ– ମୟୂର ମୟୂରୀ ଆଗରେ ନାଚେ ଓ ନାଚିବା ସମୟରେ ତା ଲାଞ୍ଜକୁ ଦୋହଲାଇଥାଏ । କେତେକ ପକ୍ଷୀ ଅଛନ୍ତି ଯେଉଁମାନେ ନାନା ପ୍ରକାର ଖେଳ କୌଶଳ ଦେଖାଇଥାନ୍ତି, ଯଥା– ସ୍ତ୍ରୀ ପକ୍ଷୀ ଆଗରେ ଉଡ଼ି ହଠାତ୍ ଡାଇଭ୍ ମାରିବା, ଉଡୁଥିବା ଅବସ୍ଥାରେ ବାରମ୍ବାର ଓଲଟିବା, ସୁନ୍ଦର ସ୍ୱରରେ ବୋବେଇବା ଇତ୍ୟାଦି । କିନ୍ତୁ ସ୍ତ୍ରୀ ପକ୍ଷୀଙ୍କୁ ଖୁସି କରିବାରେ ଅଷ୍ଟ୍ରେଲିଆର ବାଓ୍ୱାର ଚଢ଼େଇ ସମସ୍ତଙ୍କୁ ବଳିଯାଏ । ସାଟିନ୍ ବାଓ୍ୱାର ଚଢ଼େଇ ଛୋଟ ଛୋଟ କାଠି ଓ କୁଟାକୁ ଯୋଡ଼ି ଦି'ଟି ଅର୍ଦ୍ଧଚନ୍ଦ୍ର ଭଳିଆ ଛୋଟ ଛୋଟ କାନ୍ଥକରେ । ତଳେ ସରୁକୁଟା ବିଛେଇ ଦିଏ । ତାପରେ ନାନାଦି ରକମର ନେଳିଆ ଜିନିଷ ଖୋଜେ ଯଥା– ନେଳିଆ ପତ୍ର, ଫଳ, ଫୁଲ, ପିକିନିକ୍ ଜାଗାରୁ ନେଳିଆ ରିବନ୍, ସୂତା ଓ ନେଳିଆ ଘାସ ଓ ପର ଆଣି ସୁନ୍ଦର ଭାବରେ ବିଛେଇ ଦିଏ । ତାପରେ ନେଳିଆ ପର କିମ୍ବା ଘାସଟିଏ ଥଣ୍ଟରେ ମାଈ ଚଢ଼େଇ ଆଗରେ ହଲାଏ । ମାଈ ଚଢ଼େଇ ଖୁସି ହୋଇ ବସାରେ ପଶେ ।

ଆଉ ଏକ ପ୍ରକାର ଚୂଳ ଥିବା ବାଓ୍ବାର ଚଢ଼େଇ ଦୁଇ ଗଛ ଗଣ୍ଡିକୁ ଯୋଡ଼ି କୁଟା ଓ କାଠି ସାହାଯ୍ୟରେ ବସାଟିଏ ତିଆରି କରେ । ବସା ତଳେ ସୁନ୍ଦର ରଙ୍ଗିନ୍ ଫୁଲରେ କାର୍‌ପେଟ୍ ବନାଏ, ଯାହାକୁ ଦେଖି ମାଈ ଚଢ଼େଇ ଖୁସିରେ ଆସେ ।

ନିଉଟନ୍ ବାଓ୍ବାର ଚଢ଼େଇ ଛୋଟିଆଟିଏ, ନଅ ଇଞ୍ଚ ମାତ୍ର ଲମ୍ବା ଅଥଚ ଆଠ ନଅ ଫୁଟ ଉଚ୍ଚ ବସା ତିଆରି କରିଦିଏ । ଶହ ଶହ କାଠି ଓ ବହୁତ କୁଟା ଆଣି ସେ ଏହାକୁ ତିଆରି କରେ । ବସା ତିଆରି କରିବା ପରେ ସବୁଜ ରଙ୍ଗର ପତ୍ର, ଶିଉଳି ଓ ଫଳ ଆଣି ସୁନ୍ଦର ଭାବରେ ବିଛେଇ ଦିଏ ଓ ତାପରେ ବିଭିନ୍ନ ଚଢ଼େଇଙ୍କ ସ୍ୱରକୁ ଅବିକଳ ଭାବେ ନକଲ କରି ମାଈ ଚଢ଼େଇକୁ ଡାକେ ।



ଅଣ୍ଡିରା ଓ ମାଈ ଚଢ଼େଇ ଅଳ୍ପଦିନ ରହନ୍ତି ଓ ତାପରେ ମାଈ ଚଢ଼େଇ ଉଡ଼ିଯାଏ ନିଜ ବସାକୁ ଅଣ୍ଡା ଦେବାପାଇଁ ।

ସବୁଠାରୁ ସୁନ୍ଦର ବସା କରେ ରିଜେଣ୍ଟ ବାୱାର ଚଢ଼େଇ । ସେ କାଠି କୁଟାକୁ ଯୋଡ଼ି ମଜଭୁତ କାନ୍ଥ କରିସାରିବା ପରେ ଘାସ ନେଇ ଆସି କାନ୍ଥ ଭିତରଟା ପ୍ୟାଚ୍ ପକାଏ । ତାପରେ ଜଙ୍ଗଲରେ ମିଳୁଥିବା କିଛି ସବୁଜ ଫଳ ଆଣି ବସା ପାଖରେ ଜମାଏ । ସବୁଜ ଫଳକୁ ଥଣ୍ଟରେ ଚିପୁଡ଼େ ଓ ଲାଳ ମିଶେଇ ଥୁକି ଦିଏ । ଏହିଭଳି ବହୁତ ଫଳକୁ ଲାଳ ମିଶେଇ ଥୁକିସାରି ସବୁଜ ରଙ୍ଗର ପେଣ୍ଟ୍ ତିଆରି କରେ । ତାପରେ କଞ୍ଚାପତ୍ରକୁ ପେଣ୍ଟ୍‌ରେ ବୁଡ଼େଇ ସେ ବନେଇଥିବା ବସାକୁ ରଙ୍ଗିନ୍‌କରେ । ପେଣ୍ଟିଙ୍ଗ୍ କରିସାରି ବାୱାର ଚଢ଼େଇ ଉଡ଼ିଯାଏ ବିଭିନ୍ନ ରଙ୍ଗର ଫଳ, ଫୁଲ, ଛୋଟ ଛୋଟ ପଥର, ଘାସ ଇତ୍ୟାଦି ସଂଗ୍ରହ କରିବାକୁ । ସେ ରଙ୍ଗିନ୍ ଫଳଫୁଲ ଓ ଘାସକୁ ସୁନ୍ଦର ଭାବରେ ବିଛେଇଦିଏ । ନଜାଣିଲା ଲୋକ ଦେଖିଲେ ଭାବିବ ଯେ କେହି ଜଣେ ଆର୍ଟିଷ୍ଟ ଏ କାମ କରିଛି । ଏସବୁ ସେ କରେ ମାଈ ଚଢ଼େଇକୁ ଖୁସି କରିବାକୁ ।

ପୁରୁଷ ଚଢ଼େଇ ସବୁବେଳେ କ'ଣ ଏଇଭଳି ବସା କରେ ?

ନା– ସବୁବେଳେ ନୁହେଁ ବରଂ ଅଧିକାଂଶ ସମୟରେ ମାଈ ଚଢ଼େଇ ବସା ତିଆରି କରେ । ଦରଜି ଚଢ଼େଇ ବହୁତ ଛୋଟ । ସେ କଞ୍ଚାପତ୍ରକୁ ଯୋଡ଼ି ଦି' ଧାରରେ କଣା କରେ । ପତ୍ରରୁ ଶିରା ବାହାର କରି ତାକୁ କଣା ମଝିରେ ଗଳେଇ ସିଲେଇ କରେ । ପତ୍ରର ଗୋଟେ ପଟେ ସିଲେଇ ହେଲା ପରେ ତହିଁରେ ବସା ବାନ୍ଧେ । ସିଲେଇ ପାଇଁ ତା ଥଣ୍ଟ ଛୁଞ୍ଚି କାମ କରେ, ଗୋଡ଼ ଯୋଡ଼ିବା କାମ କରେ ଓ ପତ୍ରର ଶିରା ସୂତା କାମ ଦିଏ ।

ଦକ୍ଷିଣ ଆମେରିକାରେ ଏକ ଛୋଟ ଚଢ଼େଇ ଅଛି ଯେ କି ଅଦ୍ଭୁତ ବସା ତିଆରି କରେ । ଉଭୟ ମାଈ ଓ ପୁରୁଷ ଚଢ଼େଇ ମିଶି ବସା ତିଆରି କରନ୍ତି ଓ ବେଳେ ବେଳେ ମିଶି ଗୀତ ଗାଆନ୍ତି ।

ସେମାନେ ଓଦାମାଟି, କାଦୁଅ, ଗଛର ପତଳା ଛାଲି ଓ ଗୋବରରେ ବସା ତିଆରି କରନ୍ତି ।

ଏମିତି ସେମିତି ନୁହେଁ ପ୍ରଥମେ ସେମାନେ ଇଟା ତିଆରି କରି ବସାର ମୂଳଦୁଆ ତିଆରି କରିଥାନ୍ତି । ମାଟି କାଦୁଅ ଓ ଗୋବର ମିଶେଇ ସେମାନେ ଗୋଲ ଗୋଲ ଇଟା ତିଆରି କରନ୍ତି । ଇଟାକୁ ଇଟା ଯୋଡ଼ି ଗୋଲ୍ ଘର ତିଆରି କରନ୍ତି । ଗଛର ଦି'ଡାଳ ମଝିରେ ବସା କରିବା ପାଇଁ ସେମାନଙ୍କୁ ସୁବିଧା ହୁଏ । ଦିନରାତି ପରିଶ୍ରମ କରି ଦଶ ପନ୍ଦର ଦିନ ଭିତରେ ବସା ତିଆରି କରି ଦିଅନ୍ତି ଓ ତିନିରୁ ପାଞ୍ଚ ଗ୍ରାମ ଓଜନର ଦୁଇ ହଜାରରୁ ପଚିଶି ଶହ ପର୍ଯ୍ୟନ୍ତ ଇଟା ତିଆରି କରି ସେ ଘର କରିଥାଏ । ବସା ଭିତରେ ଘାସ ଇତ୍ୟାଦି ବିଛେଇ ଦିଏ ।

ଦେଖିଲ ପିଲେ ଛୋଟ ଛୋଟ ଚଢ଼େଇ ହେଲେ ବି ସେମାନଙ୍କର ବୁଦ୍ଧି କେତେ ?



# ଜନନୀ ଜନ୍ମଭୂମିଶ୍ଚ

ବୁଝିଲ ପିଲେ କଥାରେ ଅଛି ଜନନୀ ଏବଂ ଜନ୍ମଭୂମି ସ୍ୱର୍ଗଠାରୁ ବଡ଼ । ଆମେ ସବୁବେଳେ ନିଜ ମା' ଓ ମାଟି ପ୍ରତି ସମ୍ମାନ କରିବା ଉଚିତ । ଜାଣିଚ ସାଲମନ୍ ବୋଲି ଗୋଟିଏ ମାଛ ଅଛି ସେ ତା ଜନ୍ମଭୂମିକୁ କେବେ ଭୁଲେ ନାହିଁ । ଯେତେ, ଦୂର ଜାଗାକୁ ଗଲେ ମଧ ସେ ସେଇ ଜନ୍ମଭୂମିକୁ ଫେରିଆସେ । ହଜାର ହଜାର ମାଇଲ ବାଟ ଘୂରି ଘୂରି ଯେଉଁଠି ଜନ୍ମ ହୋଇଥାଏ ସେଇଠାକୁ ଲେଉଟି ଆସେ ।

କିମିତି .... କିମିତ— ପଚାରିଲେ ପୁପୁ-ଇନି । ବାପା ବୁଝେଇଲେ—

ସାଲମନ୍ ମାଛ ଅଣ୍ଡା ନଈ କିମ୍ୱା ନାଳର ଶଯ୍ୟାତଳେ ଦେଇଥାଏ । ଅଣ୍ଡା ଫୁଟି ଛୁଆ ବାହାରେ । ଶହ ଶହ ସଂଖ୍ୟାରେ ସାଲମନ୍ ଛୁଆ ପାଣିରେ ଭାସି ବୁଲନ୍ତି । ପାଣିର ଜୋର୍ ସ୍ରୋତ ଆଡ଼କୁ ମୁହଁ ରଖେ ସାଲମନ୍ ମାଛ, ଫଳରେ ପଛୁଆ ପଛୁଆ ଠେଲି ହୋଇଯାଏ । ଇମିତି ଶହ ଶହ କିଲୋମିଟର ପାଣିରେ ପଛୁଆ ଭାସି ଭାସି ସମୁଦ୍ର ମୁହାଣରେ ପହଞ୍ଚେ । ବାଟରେ କେତେ ଜାଗାରେ ନାଳରୁ ନଈ, ନଈରୁ ପୁଣି ଜଳପ୍ରପାତ ଅତିକ୍ରମ କରି ମୁହାଣ ପାଖରେ ପହଞ୍ଚିଲା ବେଳକୁ ଅନେକ ଛୁଆ ମରିଯାଆନ୍ତି । ସମୁଦ୍ର ମୁହାଣ ପାଖରେ ନଈର ସୁଅ ନଥାଏ, ପାଣି ଗୋଳିଆ ଓ ସାମାନ୍ୟ ଲୁଣିଆ । ସାଲମନ୍ ମାଛ ସାଙ୍ଗେ ସାଙ୍ଗେ ଘୂରି ପଡ଼େ ଓ ସମୁଦ୍ର ଆଡ଼କୁ ମୁହଁକରି ପହଁରି ଚାଲେ । ସମୁଦ୍ରରେ ଆରାମରେ ରୁହେ, ବହୁତ ବାଟ ବୁଲେ ।

ଛୋଟ ଛୋଟ ଚିଙ୍ଗୁଡ଼ି, ମାଛ, ଶିଉଳି ଇତ୍ୟାଦି ଖାଇ ବେଶ୍ ମୋଟା ହୋଇଯାଏ । ଘର ଛାଡ଼ିଲା ବେଳକୁ ତା ଆକୃତି ଚାଉଳଟି ପରି ହୋଇଥାଏ,

ହେଲେ ବର୍ଷକ ଭିତରେ ସେ ହୋଇଯାଏ ଦେଢ଼ଫୁଟ ଲମ୍ବା ଓ ଓଜନ ହୋଇଯାଏ ସାତ ଆଠ ପାଉଣ୍ଡ । ଅନେକ ସାଲମନ୍ ଷାଠିଏ ସତୁରି ପାଉଣ୍ଡ ପର୍ଯ୍ୟନ୍ତ ଓଜନ ହୁଅନ୍ତି । ଅଣ୍ଡାଦବା ସମୟ ଆସିଲେ ସାଲମନ୍ ସମୁଦ୍ରରୁ ଆସେ ନଈକୁ ।

ସେଇଟା ସବୁଠୁଁ ବଡ଼ ଆଶ୍ଚର୍ଯ୍ୟର କଥା । ସମୁଦ୍ରରେ ସେ କେମିତି ବାଟ ପାଏ ଯେ ସେ ଯୋଉ ନଈରୁ ଆସିଥିଲା ଠିକ୍ ସେ ନଈକୁ ଯାଏ । ପୁଣି ନଈର ସୁଅ ବିରୁଦ୍ଧରେ ପହଁରି ପହଁରି ଯାଏ । ବାଟରେ ଜଳପ୍ରପାତ ପଡ଼େ, ଯେଉଁ ଜଳପ୍ରପାତର ସେ ଉପରୁ ତଳକୁ ଆସିଥିଲା, ବର୍ତ୍ତମାନ ତଳୁ ଉପରକୁ ଯିବ



କେମିତି ? ଛୋଟ ଛୋଟ ଜଳପ୍ରପାତ ଯେଉଁଗୁଡ଼ିକ ଆଠ ଦଶ ଫୁଟ ଉଚ୍ଚା ତାକୁ ସାଲମନ୍ ମାଛ ଗୋଟେ ଡିଆଁକେ ହାଇଜମ୍ପ ମାରି ପାର୍ ହୋଇଯାଏ । ପଚାଶ ଷାଠିଏରୁ ଶହେ ଫୁଟ ଉଚ୍ଚା ଜଳପ୍ରପାତକୁ ସେ ଖେପାକୁ ଖେପା ମାରି ଡେଇଁ ଚାଲିଯାଏ । ଦଶ ଫୁଟ ବାଟ ଡିଏଁ ଓ ଡିଆଁମାରି ଯିବା ପରେ ଖୋପ

ଜାଗାଟିଏ ଦେଖି ରହିଯାଏ ପୁଣି ପାଞ୍ଚ ଦଶ ଫୁଟ ଡେଇଁପଡ଼େ ଆଉ ଗୋଟେ ଖୋପ ଜାଗାକୁ । ଏଇଭଳି ଶହ ଶହ ମାଇଲ ବେଳେ ବେଳେ ହଜାର ହଜାର ମାଇଲ ପହଁରି ସାରି ମୂଳ ନଦୀକୁ ଫେରିଆସେ । ଛୋଟ ନଈର ଠିକ୍ ଯୋଉ ସ୍ଥାନରେ ସେ ଜନ୍ମ ହୋଇଥିଲା ସେଇଠି ପହଞ୍ଚି ନଈଶଯ୍ୟାରେ କଡ଼େଇ ହୋଇ ଶୁଏ ଓ ନିଜ ଫିନ୍‌ରେ ମାଟିକୁ ଆଡ଼େଇ ଦିଏ । ଏଇଭଳି ଫୁଟେରୁ ଦେଢ଼ଫୁଟର ଗାତଟିଏ କରି ସାଲମନ୍ ଅଣ୍ଡା ଦିଏ । ପ୍ରାୟ କୋଡ଼ିଏ ହଜାର ପର୍ଯ୍ୟନ୍ତ ଅଣ୍ଡା ଗୋଟେ ଗୋଟେ ସାଲମନ୍ ମାଛ ଦେଇଥାନ୍ତି । ଏସବୁ କରିବା ପାଇଁ ଏତେ ପରିଶ୍ରମ ପଡ଼େ ଯେ ଅନେକ ସମୟରେ ସାଲମନ୍ ମାଛଟି ଅଣ୍ଡା ଦେଇ ସାରି ମରିଯାଏ ଏବଂ ଅଣ୍ଡାରୁ ଛୁଆ ହେଲେ, ସେ ପୁଣି ସେଇଭଳିଆ ନଈରୁ ସମୁଦ୍ରକୁ ଯାଏ ଓ ସମୁଦ୍ରରୁ ଫେରିଆସେ ନିଜ ଜନ୍ମସ୍ଥାନକୁ ।

ତମେ ଜାଣିଛ ପିଲେ ହ୍ରଦରେ ବହୁତ ଛୋଟ ଛୋଟ ନଦୀ ପଡ଼ନ୍ତି । ଥରେ ପରୀକ୍ଷା କରିବା ପାଇଁ ପ୍ରତ୍ୟେକ ନଈରେ ଜାଲ ପକେଇ ଅନେକ ସାଲମନ୍ ମାଛ ଧରାଗଲା ଓ ସେମାନଙ୍କ ଦେହରେ ଚିହ୍ନକରି କିଏ କେଉଁଠୁ ଧରାଗଲା ଲେଖାଗଲା । ତାପରେ ଗାଡ଼ି ଓ ବୋଟ୍‌ରେ ନିଆଯାଇ ବିରାଟ୍ ହ୍ରଦର ମଝି ସ୍ଥାନରେ ଛାଡ଼ି ଦିଆଗଲା । ଆଶ୍ଚର୍ଯ୍ୟ କଥା ଯେଉଁ ସାଲମନ୍ ମାଛ ଯେଉଁ ଜାଗାରୁ ଧରା ଯାଇଥିଲା ଅଠଚାଳିଶ ଘଣ୍ଟା ମଧ୍ୟରେ ସେ ସେଇଠିକି ଫେରି ଆସିଥିବା ଦେଖାଗଲା ।

ସାଲମନ୍ ମାଛଭଳିଆ ଗୋଟିଏ ଜାତିର କଇଁଚ ଅଣ୍ଡା ଦିଏ ଓ ଛୁଆ ବାଟ ଖୋଜି ଖୋଜି ଜନ୍ମସ୍ଥାନକୁ ଫେରିଯାଏ । ଆମ ଓଡ଼ିଶାର ଗହୀରମଥାକୁ ଲକ୍ଷ ଲକ୍ଷ କଇଁଚ ଆସନ୍ତି, ସମୁଦ୍ରକୂଳ ପାଣିରେ ଗାତ କରି ଅଣ୍ଡା ଦେଇ ଚାଲି ଯାଆନ୍ତି । ଯଦିବା ଅଣ୍ଡା ଦବା ସ୍ଥାନଟା ସମୁଦ୍ରରୁ ଦୁଇ ଶହ ତିନି ଶହ ଫୁଟ ହୁଏ

ତଥାପି କଇଁଚ ଛୁଆ ଅଣ୍ଡା ଫୁଟିଲା ମାତ୍ରେ ପ୍ରଥମେ ବାଲି ତଳୁ ଉପରକୁ ଉଠେ ତାପରେ ସମୁଦ୍ର ଆଡ଼କୁ ମୁହାଁଏ ଓ ତରବରରେ ପାଣି ଭିତରକୁ ପିଶିଯିବା ପାଇଁ ଚେଷ୍ଟା କରେ । ସମୁଦ୍ରର ଓଲଟା ବାଟରେ କେବେ ଯାଏ ନାହିଁ । ଏଇ ଶହେ ଫୁଟ ତା ପାଇଁ ବହୁତ ବଡ଼ କଥା କାରଣ ଅସଂଖ୍ୟ ଚଢ଼େଇ ବିଲୁଆ କୁକୁର ଜଗିଥାନ୍ତି ତାକୁ ମାରି ଖାଇବା ପାଇଁ ।

ଥରେ ସମୁଦ୍ର ପାଣିରେ ପଶିଲା ପରେ କଇଁଚ ଛୁଆଟି ପହଁରି ପହଁରି ଫେରିଯାଏ ଯେଉଁଠୁ ତା ମା' ଆସିଥିଲା । ଓଡ଼ିଶାର ଗହୀରମଥାକୁ କଇଁଚ କେଉଁଠୁ ଆସନ୍ତି ଏ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟଭାବେ ଜଣାପଡ଼ିନାହିଁ । କେତେକ ଅନୁମାନ କରନ୍ତି ସେମାନେ ଫିଲ୍‌ପାଇନ୍‌ସରୁ ଆସନ୍ତି । ସେ ଯାହାହେଉ ପାଣି ଭିତରେ ରାସ୍ତା ଖୋଜି ମା' ଯୋଉଠୁ ଆସିଥିଲା ସେଠିକି ଫେରିଯିବା କମ୍ ଆଶ୍ଚର୍ଯ୍ୟର କଥା । ଏ ପର୍ଯ୍ୟନ୍ତ ଠିକ୍ ଭାବେ ଜଣାପଡ଼ିନାହିଁ କେମିତି ସେମାନେ ବାଟ ପାଆନ୍ତି ।



# ପିସ୍ତଲ ଓ ମେସିନ୍‌ଗନ୍

ଜୀବଜନ୍ତୁ ଗପ କହୁଥିବା ବେଳେ ବାପା କହିଲେ ଶୁଣ ପିଲେ, ଆମେରିକା ପାଖ ସମୁଦ୍ରରେ ନାଲିରଙ୍ଗର ଗୋଟିଏ ଚିଙ୍ଗୁଡ଼ି ଅଛି, ତା' ନାଁ ପିସ୍ତଲ ଚିଙ୍ଗୁଡ଼ି ।

ପିସ୍ତଲ କାହିଁକି ?

କାରଣ ସେ ଚିଙ୍ଗୁଡ଼ି ଶିକାର କରେ । ଯିମିତି ପିସ୍ତଲରେ ଗୁଳି ଲୋଡ୍ କରି କକ୍ ଫାଏରିଂ କରାଯାଏ ସିମିତି । ଏ ଚିଙ୍ଗୁଡ଼ି ତା'ର ଶୁଣ୍ଢକୁ ପାଟି ଭିତରକୁ ଟାଣିଆଣେ ଓ ଚାପିକରି ରଖେ । ଯିମିତି ପାଖକୁ କୌଣସି ଛୋଟ ମାଛ ଆସେ ଚାପି ରଖିଥିବା ଶୁଣ୍ଢକୁ ଛାଡ଼ିଦିଏ । ଠୋ କରି ଶବ୍ଦ କରି ଶୁଣ୍ଢ ବାହାରି ମାଛ ଦେହରେ ବାଜେ । ଏତେ ଜୋର୍ ସେ ବାହାରେ ଓ ଇମିତି ଶବ୍ଦ କରେ ଯେ ବାଜିଥିବା ମାଛ ତ ମରିଯାଏ, ପାଖଆଖ ଛୋଟ ମାଛ ଗୁଡ଼ା ମଧ ଅଚେତ ହୋଇ ଯାଆନ୍ତି । ସମସ୍ତଙ୍କୁ ଧରି ଚିଙ୍ଗୁଡ଼ି ଖାଏ । କେବଳ ଶିକାର କରିବା ପାଇଁ ନୁହେଁ ନିଜକୁ ରକ୍ଷା କରିବା ପାଇଁ ମଧ୍ୟ ପିସ୍ତଲ ଚିଙ୍ଗୁଡ଼ି ଏଇଭଳିଆ କୌଶଳ ଅବଲମ୍ବନ କରେ । ସାଧାରଣତଃ ସେ ସନ୍ଧିରେ ଲୁଚି କରିଥାଏ, କିନ୍ତୁ ତା ପାଖକୁ ଯଦି କୌଣସି ବଡ଼ ମାଛ ଆସେ, ତାକୁ ଲକ୍ଷ୍ୟ କରି ସେ ଫାଏରିଂ କରେ । ଶୁଣ୍ଢ ମାଡ଼ର ଭୀଷଣ ଶବ୍ଦ ଓ ତା ସାଙ୍ଗେ ହଠାତ୍ ପାଣି ଚହଲିଯିବା ଦେଖି ଆକ୍ରମଣକାରୀ ମାଛ ଛାନିଆରେ ପଳାଏ ।

ଚିଙ୍ଗୁଡ଼ିମାନେ ସାଧାରଣତଃ ଏକୁଟିଆ ଲୁଚିରହନ୍ତି । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଆମେରିକାରେ ଗୋଟେ ବୁଡ଼ାଜାହାଜର ନାବିକମାନେ ସମୁଦ୍ର ତଳେ ଠକ୍ ଠକ୍ ଶବ୍ଦ ଶୁଣି ଭାବିଲେ ଜାପାନୀମାନେ ବୋଧେ ବୋମା ବିଛେଇଛନ୍ତି । କିନ୍ତୁ ଅନୁସନ୍ଧାନ କରି ଦେଖିଲାରୁ ଜଣାପଡ଼ିଲା ଯେ ଏସବୁ ପିସ୍ତଲ ଚିଙ୍ଗୁଡ଼ିର

କାମ । ପିସ୍ତଲ ଚିଙ୍ଗୁଡ଼ି ତା' ଇଲାକାରେ କାହାରିକୁ ପ୍ରବେଶ କରିବାକୁ ଦିଏ ନାହିଁ । ସେଇଥିପାଇଁ ବାରମ୍ବାର ଫାଏରିଂ କରି ଧମକ ଦେଉଥିଲା । ସେମାନଙ୍କର ଅଲଗା ରହିବାର ମୁଖ୍ୟ କାରଣ ହେଲା ଯେ ଅନ୍ୟ କେହି ସାଙ୍ଗରେ ରହିଲେ ପରସ୍ପରକୁ ଗୁଳିକରି କ୍ଷତି ଘଟିପାରେ ।

ଆଉ କୋଉ ମାଛ ଇମିତି କରେ ?

ହଁ, ଆର୍ଚ୍ଚର ଫିସ୍ ବୋଲି ଗୋଟିଏ ମାଛ ଅଛି ସେ ପାଣି ଭିତରେ ଥାଇ ପାଣି ଉପରେ ଉଡୁଥିବା ପୋକଙ୍କୁ ଶିକାରକରେ । ପାଣି ଭିତରୁ ପୋକଙ୍କୁ ଦେଖିଲାମାତ୍ରେ ଗାଲିସିରେ ପାଣି ଭର୍ତ୍ତିକରି ମୁହଁର ଗୋଟେ ଛୋଟ କଣା ବାଟେ ଖୁବ୍ ଜୋର୍‌ସେ ଛାଡ଼େ । ଟୋପାଟୋପା ପାଣି ମେସିନଗନ୍‌ରୁ ଧାଏଁ ଶହ ଶହ ଗୁଳି ଭଳି ବାହାରେ ଓ ପୋକ ଦେହରେ ବାଜି ତାକୁ ପାଣିରେ ପକେଇ ଦିଏ । ଏ ମାଛର ଲକ୍ଷ୍ୟ କେବେ ଭୁଲ୍ ହୁଏ ନାହିଁ । ପାଣି ଉପରେ ତିନି ଚାରି ଫୁଟ ପର୍ଯ୍ୟନ୍ତ ଶିକାରକୁ ପାଣି ପିଚ୍‌କାରି ମାରି ଅତି ସହଜରେ ଝଡ଼େଇ ଦିଏ ।



ତିନି ଚାରିଫୁଟ ତ ବହୁତ ପାଖ– କହିଲେ ପିଲେ ।

କଥାଟା ଏତେ ସହଜ ନୁହେଁ ବୋଲି ବାପା ଉତ୍ତର ଦେଲେ । ପ୍ରଥମ କଥା ହେଲା ମାଛ ପାଣି ଭିତରୁ ଥାଇ ପାଣି ପୋପାଡ଼େ, ପୋକଟାର ଦୂରତା ଓ ସେ କେତେ କୋଣରେ ଅଛି ତା' ପାଣି ଭିତରୁ ଥାଇ ଜାଣିବା ଭାରି କଷ୍ଟ । ତମେ ଦେଖିନ ପିଲେ ପାଣିରେ କାଠିଟେ ପୂରାଇଲେ କେମିତି ବଙ୍କା ଦିଶେ କିମ୍ବା ପାଣି ଗ୍ଲାସ୍‌ରେ ଗୋଡ଼ିଟିଏ ପକେଇଲେ ଯେଉଁଠି ପଡ଼ିଥାଏ ତାଠୁ ଟିକିଏ ଉଚ୍ଚାରେ ଥିଲା ଭଳି ଦିଶେ । ଯେମିତି ପାଣି ଉପରୁ ପାଣି ତଳକୁ ଜିନିଷ ଦେଖିବାରେ ଭୁଲ୍ ହୁଏ ସେମିତି ପାଣି ଭିତରୁ ପାଣି ଉପର ଜିନିଷ ଦେଖି ଭୁଲ୍ ହେବା ସ୍ୱାଭାବିକ । ତା'ଛଡ଼ା ସମୁଦ୍ର ପାଣି ପୂରାପୂରି ସଫା ନୁହେଁ ଏତେ ଅସୁବିଧା ସତ୍ତ୍ୱେ ଆର୍ଚ୍ଚ ଫିସ୍ ଉଡ଼ିଯାଉଥିବା ଶିକାରକୁ ଲକ୍ଷ୍ୟ କରି ପାଣି ମାରି ଖସେଇ ଦିଏ । ତମେ ପିଲେ ଉଡ଼ି ଯାଉଥିବା ଚଢ଼େଇଟିକୁ ପଥର ମାରି ଖସେଇ ଦେଇପାରିବ ? କିମ୍ବା ଉଡ଼ିଯାଉଥିବା ଚଢ଼େଇଟିକୁ କେଉଁ ଶିକାରୀ ସହଜରେ ବନ୍ଧୁକରେ ଗୁଳିମାରି ଝଡ଼େଇ ପାରିବ ?

ଭାରି କଷ୍ଟ—କହିଲେ ପିଲେ ।

ଏଇଭଳି ଲକ୍ଷ୍ୟର ଆଉ ଗୋଟିଏ ଉଦାହରଣ ଶୁଣ । ଆଫ୍ରିକା ଜଙ୍ଗଲରେ ଏକ ପ୍ରକାର କଳା ଗୋଖର ସାପ ଥାଆନ୍ତି । ଏମାନେ ବେଙ୍ଗ, ମୂଷା, ଛୋଟ ଛୋଟ ସାପ, ଚଢ଼େଇ ଛୁଆଙ୍କୁ କାମୁଡ଼ି ମାରି ଖାଆନ୍ତି । ଯଦି ବନ୍ୟଜନ୍ତୁ ହାବୁଡ଼ରେ ପଡ଼େ ସାପ ପଳେଇବାକୁ କିମ୍ବା ଲୁଚିବାକୁ ଚେଷ୍ଟା କରେ । ସେ ସବୁ ନହେଇ ପାରିଲେ ନିଜକୁ ରକ୍ଷା କରିବା ପାଇଁ ଗୁଡ଼େଇ ହୋଇଯାଇ ଫଣା ଟେକି ଅପେକ୍ଷା କରେ । ଫଣାରେ ଛୋଟ ଛୋଟ କଣା ଅଛି, ତା ମଧ୍ୟ ଦେଇ

ସାପ ବିଷ ଛାଡ଼ିଦିଏ । ଲକ୍ଷ୍ୟ କରେ, ମୁକାବିଲା କରୁଥିବା ପ୍ରାଣୀର ଆଖିକୁ, ତିନି ଚାରିଫୁଟ ଦୂରରେ ଥିବା ପ୍ରାଣୀର ଆଖିରେ ବିଷ ପଡ଼ିଲା ମାତ୍ରେ ଭୀଷଣ ଜାଳାପୋଡ଼ା ହୁଏ । ଅନେକ କ୍ଷେତ୍ରରେ ସେମାନେ ଅନ୍ଧ ହୋଇ ଯାଆନ୍ତି । ମଣିଷ କ୍ଷେତ୍ରରେ ସାଙ୍ଗେ ସାଙ୍ଗେ ଧୋଇ ଚିକିତ୍ସା ନ କଲେ ରକ୍ଷା ନାହିଁ । ଆଶ୍ଚର୍ଯ୍ୟର କଥା ଯେ ସାପ ନିଜେ ବେଶି ଭଲ ଦେଖିପାରେ ନାହିଁ । ଗୋଖର ସାପର ଦୃଷ୍ଟିଶକ୍ତି ବହୁତ ଦୁର୍ବଳ ଅଥଚ ମୁକାବିଲା କରିବାକୁ ଆସୁଥିବା ପ୍ରାଣୀର ଆଖିକୁ ଲକ୍ଷ୍ୟ କରି ସେ ବିଷ ପିଚକାରି ମାରିପାରେ । ଦ୍ୱିତୀୟରେ ବେଙ୍ଗ, ମୂଷା ଇତ୍ୟାଦିଙ୍କୁ ମାରିବା ପାଇଁ ସେ ବିଷ ବ୍ୟବହାର କରେ ନାହିଁ, ବିଷ ସାଇତି ରଖିଥାଏ ନିଜକୁ ରକ୍ଷା କରିବାପାଇଁ । ଏସବୁ କରିବାପାଇଁ ସେ କାହାଠୁ ଶିକ୍ଷା ପାଇ ନଥାଏ । ଶିକାର କରିବା, ଲଢ଼େଇ କରିବା, ବାଘଛୁଆ ବାଘୁଣୀଠୁ ଶିଖିଥାଏ । ଗୋଖର ସାପ ତା' ଶତ୍ରୁ ଆଖିକୁ ଠିକ୍ ଲକ୍ଷ୍ୟ କରି ମାରିବା ନିଜ ମାଠୁଁ ଶିଖି ନଥାଏ, ମା'ତ ଅଣ୍ଡା ଦେଇ ଚାଲିଯାଏ ଶିଖେଇବ କ'ଣ । ହଁ ବଡ଼ ବଡ଼ ଜନ୍ତୁ ଯଥା– ବଣମଇଁଷି, ହାତୀ, ଓଟପକ୍ଷୀ ଆସିବାର ଜାଣିଲେ ଗୋଖର ପ୍ରାଣ ବିକଳରେ ପଳାଏ ।

କେତେକ ଜୀବଜନ୍ତୁ ପଶୁପକ୍ଷୀ ନିଜ ଜିଭକୁ ବ୍ୟବହାର କରନ୍ତି ଅସ୍ତ୍ରଭାବେ । ତିନିଶିଙ୍ଘିଆ, ଏଣ୍ଡୁଅ, ଲମ୍ୱା ହବ ଅଧ ଫୁଟେ ମାତ୍ର । ସୂତା ଭଳିଆ ତା' ଜିଭ ଅଗଟା ବେଶ୍ ମୋଟା ମାଂସଳ ଓ ଅଠାଳିଆ । ଏଣ୍ଡୁଅ ଡାଳରେ ଆସ୍ତେ ଆସ୍ତେ ଯାଏ ମାଛି ଇତ୍ୟାଦି ଧରିବା ପାଇଁ । ମାଛି ତ କେଡ଼େ ତରକା ଜାଣିଚ ପିଲେ କିନ୍ତୁ ଏଣ୍ଡୁଅ ଆସ୍ତେ ଆସ୍ତେ ପାଖକୁ ଯାଇ ଜିଭକୁ ପାଟିରୁ ବହୁତ ଜୋର୍‌ସେ ବାହାର କରିଦିଏ । ବୁଲେଟ୍ ଭଳିଆ ଜିଭ ପାଟିରୁ ବାହାରି ମାଛି

କିମ୍ବା ପୋକ ଦେହରେ ବାଜେ । କିଛି ଜାଣିବା ପୂର୍ବରୁ ସେ ଜିଭ ଅଠାରେ ଲାଗିଯାଏ ଓ ଜିଭଟା ସାଙ୍ଗେ ସାଙ୍ଗେ ଜୋର୍‌ସେ ପାଟି ଭିତରକୁ ଫେରିଆସେ । ଏ ସବୁ ଅଧ ସେକେଣ୍ଡ ମଧ୍ୟରେ ହୋଇଯାଏ । ସ୍ପ୍ରିଂ ଭଳିଆ ଜିଭ କାମ କରେ । ଫୁଟେ ଲମ୍ବର ଜିଭ ଠିକ୍ ଲକ୍ଷ୍ୟ ଜାଗାରେ ବାଜେ । ପୋକର ଅବସ୍ଥିତି, ନିଜ ସ୍ଥାନର ଦୂରତା ଇତ୍ୟାଦି ମାପି ଜିଭକୁ ଛାଡ଼ିବା ପୁଣି ନେଇ ଆସିବା କିଛି କମ୍ କଥା ନୁହେଁ ।



# ପୁସ୍ତକ ସଂପର୍କରେ ...

ଶ୍ରୀ ବିପିନ ବିହାରୀ ମିଶ୍ରଙ୍କ ଦ୍ୱାରା ଲିଖିତ ଏହି "ବିଚିତ୍ର ଜୀବଜନ୍ତୁ" ପୁସ୍ତକଟି ଓଡ଼ିଆ ଶିଶୁ ସାହିତ୍ୟକୁ ଏକ ଅନବଦ୍ୟ ଅବଦାନ । କାରଣ, ଏହାର ବିଷୟବସ୍ତୁରେ ଥିବା ତଥ୍ୟ କେବଳ ଯେ ଶିଶୁମାନଙ୍କ ଲାଗି ଉଦ୍ଦିଷ୍ଟ, ତା ନୁହେଁ, ବୟସ୍କମାନଙ୍କ ଲାଗି ମଧ୍ୟ ଉଦ୍ଦିଷ୍ଟ । କିନ୍ତୁ ଏହାର ଭାଷା ଓ ଶୈଳୀ ଶିଶୁମାନଙ୍କ ମନକୁ ଛୁଇଁଲା ଭଳି ସରସ ଓ ବୋଧଗମ୍ୟ ।

ଏଥିରେ ବିଭିନ୍ନ ପକ୍ଷୀ ଓ ଜୀବଜନ୍ତୁଙ୍କ ଜୀବନଧାରା ଓ ଶୈଳୀ ବେଶ୍ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି । ସେମାନଙ୍କ ଜୀବନଚର୍ଯ୍ୟାକୁ ମନନଶୀଳ ଦୃଷ୍ଟିଭଙ୍ଗୀ ନେଇ ଲେଖକ ଗଭୀର ଭାବରେ ଅନୁଧ୍ୟାନ କରିଛନ୍ତି ଓ ତାକୁ ଅତି ନିଖୁଣ ଭାବରେ ପରିବେଷଣ କରିଛନ୍ତି ।

ଦେଶବିଦେଶର ପଶୁପକ୍ଷୀମାନଙ୍କର ଜୀବନଚର୍ଯ୍ୟା ଉପରେ ଲିଖିତ ଏହି ପୁସ୍ତକଟି ଦ୍ୱାରା ପାଠକ ପାଠିକାମାନେ ବହୁ ଅଜ୍ଞାତ ତଥ୍ୟ ବିଷୟରେ ଅବହିତ ହୋଇ ପାରିବେ ବୋଲି ଆଶାକରୁ ।

– ପ୍ରକାଶକ